# ବିଲଙ୍କା ରାମାୟଣ

बिलंका रामायण ପୂର୍ବ ଖଣ୍ଡ पूर्व खण्ड



ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର

ମୂଲ୍ୟ—ଟ ୪-୫୦ ଗ୍ରାହକଙ୍କ ପଚାଶ ପଇସା ମାତ୍ର

( ପୂର୍ବଖଣ୍ଡ )

## ବିଲଙ୍କା ରାମାୟଣର

# ସୂଚିପତ୍ର

—ସମାପ୍ତ—



## ବୃହତ୍

# ବିଲଙ୍କା ରାମାୟଣ

## ପୂର୍ବଖଣ୍ଡ

### ବନ୍ଦନା

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ କଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।

ଆଦୌ ରାମ ତପୋବନଂ ପ୍ରାବଶ୍ୟନ୍ ହତ୍ୱା ମୃଗୀ କାଞ୍ଚନଂ
ବୈଦେହୀ ହରଣଂ ଜଟାୟୁ ମରଣଂ ସୁଗ୍ରୀବ ସମ୍ଭାଷଣଂ ।
ବାଲି ନିଗ୍ରହଣଂ ସମୁଦ୍ର ତରଣଂ ଲଙ୍କାପୁରୀ ଦହନଂ
ପଶ୍ଚାଦ୍ରାବଣ କୁମ୍ଭକର୍ଣ୍ଣ ନିଧନଂ ଏତାଦ୍ଧି ରାମାୟଣ ।
ରାମଂ ଲକ୍ଷଣ ପୂର୍ବଜଂ ରଘୁବରଂ ସୀତାପତି ସୁନ୍ଦରଂ
କାକୁତ୍ସ୍ଥଂ କରୁଣାକରଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକଂ ।
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ
ବନ୍ଦେ ଲୋକାଭିରାମଂ ରଘୁକୁଳତିଳକଂ ରାଘବଂ ରାବଣାରି ।

ଖର୍ବଂ ସ୍ଥୂଳତନୁ ଗଜେନ୍ଦ୍ର ବଦନଂ ଲମ୍ବୋଦରଂ ସୁନ୍ଦରଂ
ପ୍ରସ୍ୟନ୍ଦନ୍ମଧୁଗନ୍ଧଲୁବ୍ଧମଧୁପବ୍ୟାଲୋଲଗଣ୍ଡସ୍ଥଳଂ ।
ଦନ୍ତାଘାତ ବିଦାରିତା ବସୁମତୀ ସିନ୍ଦୂର ଶୋଭାକରଂ
ବନ୍ଦେ ଶୈଳ ସୁତା ସୁତଂ ଗଣପତିଂ ସିଦ୍ଧିପ୍ରଦଂ କାମଦଂ ।

ଯୋଗଜ୍ଞାନଧରେ ତମୋଗୁଣଧରେ ବିଧ୍ୱଂସ୍ତଦକ୍ଷଧ୍ୱରଃ
ଶଶ୍ୱଦ୍ଭସ୍ମଧରେ ଭୁଜଙ୍ଗମ ଧରଃ ଭକ୍ତାନୁକମ୍ପାଧରଃ ।
ଦେବୋ ବ୍ରହ୍ମଧରେ ଧରେ ବୃଷଧରେ ଶୈଳେନ୍ଦ୍ର ପୁତ୍ରୀଧରଃ
ସର୍ବାନନ୍ଦଧରେ ସୁଧାକର ଧରଂ ମାଂ ପାତୁ ଗଙ୍ଗାଧରଃ ।

ସରସ୍ୱତି ମହାମାୟା ବନ୍ଦେ କମଳଲୋଚନା
ମମ କଣ୍ଠେ ନିବାସାୟ ବାକ୍ୟଦେବୀ ନମୋଽସ୍ତୁତେ ।

## ଦେବାଦେବୀଙ୍କ ବନ୍ଦନା

ଜୟ ସର୍ବମଙ୍ଗଳା ମା ଜୟ କାତ୍ୟାୟିନୀ
ଖଣ୍ଡା ଖପରଧାରିଣୀ ମହିଷା ମର୍ଦ୍ଦିନୀ ।
ଜୟ ଜୟ ଶାରଳା ଗୋ ଝଙ୍କଡ଼ବାସିନୀ
ଜୟ ସିଦ୍ଧଚଣ୍ଡୀ ମାତ ଅଶୁଭ ନାଶିନୀ ।
ଭୈରବ ମୂରତି ଧରି ଝଙ୍କଡ଼ ପୁରରେ
ଜନମିଲ ଆସି ସିଦ୍ଧ ଶାରଳା ରୂପରେ ।
ସଙ୍କଟ ତାରଣୀ ମା ଅଭୟା ବରଦାନୀ
ଝଙ୍କଡ଼େ କରିଛ ବିଜେ ମହେଶ ଭାବିନୀ ।
ଅଶେଷ ଲୋକ ଜନନୀ ଅଟ ଆଦ୍ୟମାତା
ତୁମ୍ଭେ କୃପା କଲେ ମୂର୍ଖ ପଣ୍ଡିତେ ଗଣିତା ।
ଜୟ ଜୟ ସଦାଶିବ ତ୍ରିଶୂଳ ଧାରଣ
ବିଭୂତି ଲେପନ ଅଙ୍ଗ ପାର୍ବତୀ ରମଣ ।
ଜୟ ଜୟ ନୀଳକଣ୍ଠ ଜୟ ଗଙ୍ଗାଧର
ମୋହିଲ ତାଣ୍ଡବ ନୃତ୍ୟେ ଦେବ ତିନିପୁର ।
କପିଳାସ ବାସୀ ହବା ହଣି କୋପମୂର୍ତ୍ତି
କ୍ଷଣେ କ୍ଷଣେ ହେଳ ଯାର ଭରିଯା ପାର୍ବତୀ ।
ଭରସା କରଣ ମୁହିଁ ଶ୍ରୀପଦେ ଶରଣ
ଆଶା ବଳାଇଛୁ ମୋତେ କରିବା କାରଣ ।
ଶାରଳା ଦାସ ଶରଣ ପଶେ ସେ ଚରଣେ
ମୂର୍ଖ ମୁହିଁ ତ ପଣ୍ଡିତ ଶାସ୍ତ୍ରହିଁ ନ ଜାଣେ ।
ଜ୍ଞାନ ଧ୍ୟାନ ଯୋଗ ଲୟ କିଛି ମୋର ନାହିଁ
ଗ୍ରନ୍ଥ ଭେଦିବାକୁ ଶକ୍ତି ମୋର ଅବା କାହିଁ ।
ଶ୍ରୀ ଶାରଳା ମାତାଙ୍କର ସଦା ଅଟେ ଦାସ
ତାଙ୍କର ଆଜ୍ଞାରେ ଶାସ୍ତ୍ର ଅଛି ମୋ ଅଭ୍ୟାସ ।
ସେ ଯାହା କରନ୍ତି ଆଜ୍ଞା ମୁଁ ତାହା ଲେଖଇ
ଅପଣ୍ଡିତ ମୂର୍ଖ ମୋର ଶାସ୍ତ୍ରଜ୍ଞାନ ନାହିଁ ।
ଜୟ ଜୟ ଜଗନ୍ନାଥ ଜଗତ କାରଣ
ଜୟ ଜୟ ଜଗନ୍ନାଥ ତ୍ରିଲୋକ ତାରଣ ।
ଅଧମ ତାରଣ ପ୍ରଭୁ ଦୁଃଖୀଜନ ବନ୍ଧୁ
ବିପଦ ଭଞ୍ଜନ ପ୍ରଭୁ ଦେବ କୃପାସିନ୍ଧୁ ।
ଧରିଛ ଶାରଙ୍ଗ ଧନୁ ଅସିପଦ୍ମ ଗଦା
ମୁହିଁ ମୂର୍ଖ ଅପଣ୍ଡିତ ଶରଣ ସର୍ବଦା ।
ଶାସ୍ତ୍ର ବଖାଣିବା ମୋର ନାହିଁତ ଶକତି
ଶ୍ରୀ ଶାରଳା ପରସାଦେ ବଳାଇଛୁ ମତି ।
ସେ ଦେବୀ ଝଙ୍କଡ଼ପୁରେ ଅଛନ୍ତି ଯେ ବସି
ସୁର ସିଦ୍ଧ ମୁନି ଧ୍ୟାନ କରୁଛନ୍ତି ଆସି ।
ମୂର୍ଖକୁ ବୋଇଲେ ସାହା ହୁଅଇ ପଣ୍ଡିତ
ସରସ୍ୱତୀ କର କୃପା ଜନକୁ ଉଦିତ ।
ମୋହିଲ ଛତିଶ ରାଗିଣୀରେ ହର ମନ
ତେଣୁକରି ତୁମ୍ଭଙ୍କୁ ସେ ହୋଇଲେ ପ୍ରସନ୍ନ ।
ଅରକ୍ଷିତେ ଦୟା ଯେବେ କରିବ ଗୋ ମାତ
ଆଜ୍ଞାହେଲେ ରାମାୟଣ କରିବି ଉକତ ।
ଶ୍ରୀହରି ସୁମରି ନରେ ସଂସାରୁ ନିସ୍ତର
ଶ୍ରୀହରିଙ୍କ ନାମଗୋଟି ସଂସାରରେ ସାର ।
ଶ୍ରୀହରିଙ୍କ ନାମଗୋଟି ନରତେ ଅଭ୍ୟାସ
କରି ଜନେ ତରିଯାଅ ଏ ଭବ କଲୁଷ ।



# ଶିବ ପାର୍ବତୀଙ୍କର ରାମାୟଣ ଚରିତ କଥୋପକଥନ ଓ ଶ୍ରୀରାମଚନ୍ଦ୍ରଙ୍କ ଅଯୋଧ୍ୟାଗମନ

ଏଥିଅନ୍ତେ ପାର୍ବତୀ ଯେ ଯୋଡ଼ି କେନକର
ଶୂଳପାଣି ପାଦତଳେ କଲେ ନମସ୍କାର ।
ଆହେ ବିଶ୍ୱନାଥ ମୋତେ ହୋଇ ସୁପ୍ରସନ୍ନ
ବୁଝାଇ କହନ୍ତୁ ଏ ବାଲ୍ମୀକି ରାମାୟଣ ।
ସହସ୍ରଶିରାକୁ ରାମ ମାଇଲେ କପର
ଏଥିର ବୃତ୍ତାନ୍ତ ବୋଲ ଆହେ ଶୂଳଧାରୀ ।
ବୋଲନ୍ତି ଈଶ୍ୱର ତୁମ୍ଭେ ଶୁଣ ଗୋ ପାର୍ବତୀ
ରାମାୟଣ ଗ୍ରନ୍ଥ ଶୁଣି ହୁଅସି ମୁକତି ।
ସାମବେଦୁ ଜାତ ଏହି ଗ୍ରନ୍ଥ ରାମାୟଣ
ହିମବନ୍ତ ଦୁଲଣୀ ଗୋ ଏକମନେ ଶୁଣ ।

ମାର୍ଗଶିର ମାସ ଶୁକ୍ଳପକ୍ଷ ଗୁରୁବାରେ
ଦ୍ୱିଜ ନାମେ ନକ୍ଷତ୍ର ଯେ ଅଛି ସେ ଦିନରେ
ବାଳବ କରଣ ଆୟୁଷ୍ମାନ ନାମେ ଯୋଗ
ପଞ୍ଚମୀ ତିଥିରେ ଦିବା ମାତଦଣ୍ଡ ଭୋଗ ।
ସରଯୂ କୂଳରେ ଯାଇ ରହିଲେ ଶ୍ରୀରାମ
ଜାନକୀ ଲକ୍ଷ୍ମଣ ସଙ୍ଗତରେ ହନୁମାନ ।
ବୋଲନ୍ତି ଲକ୍ଷ୍ମଣେ ଶୁଣି କୌଶଲ୍ୟାଙ୍କ ବାଳା
ବାବୁରେ ସୌମିତ୍ରୀ ବନବାସ ପାର ଗଲା ।
ଶୁଣି କର ଖଡି ଦେନ ଲକ୍ଷ୍ମଣ ଦେଖିଲେ
ଧନୁ ଏକୋଇଶ ଦିନ ଅଯୋଧ୍ୟା ଛାଡ଼ିଲେ । 14



ରାମାୟଣ ଚରିତ ଏ ଅଟେ ଅଗୋଚର
ଲଘୁ କରି ଶୁଣି ଭବସାଗରରୁ ତର ।
ଲଙ୍କାରେ ବଧିଲେ ରାବଣକୁ ଦେବରାଜ
ମାନବ ରୂପରେ ପ୍ରଭୁ କଲେ ଦେବକାର୍ଯ୍ୟ ।
ଜାନକୀ ଉଦ୍ଧାର ତାରିଲେକ ଦେବଗଣ
ଅଯୋଧ୍ୟାକୁ ବାହୁଡ଼ିଲେ ପ୍ରଭୁ ରଘୁରାଣ ।
କଷ୍ଟ ପାରଗଲା ଶେଷ ହେଲା ବନବାସ
ଦିବସ ଲେଖରେ ପୂର୍ଣ୍ଣ ଚଉଦ ବରଷ ।

ଧନୁ ଏକୋଇଶ ଦିନ ହୋଇଲା ସମ୍ପୂର୍ଣ୍ଣ
ଆଜି ହେଲା ପୁଣି ମାଘ ମାସ ସାତଦିନ ।
ଅଠର ଦିବସ ଦେବ ଉଭାଳ ଗଲାଣି
ଅଯୋଧ୍ୟାପୁରକୁ ଚାଲ ଯିବା ରଘୁମଣି ।
ଶ୍ରୀରାମ ବୋଇଲେ ବାବୁ ଶୁଣରେ ଲକ୍ଷ୍ମଣ
ଅଯୋଧ୍ୟା ଯିବାକୁ ସଙ୍କୁଚିତ ମୋର ମନ ।
ଅଯୋଧ୍ୟାକୁ ଯାଅ ବାବୁ ଶୁଣରେ ଲକ୍ଷ୍ମଣ
ବାରତା କହିଣ ଆସ ରାଜା ସନ୍ଧାନ ।

ମୋହର ବାରତା ନେଇ କହିବ ମାତାଙ୍କୁ
ରାଜା ଶ୍ରଦ୍ଧା କଲେ ସିନା ଯିବ ଅଯୋଧ୍ୟାକୁ ।
ଲକ୍ଷ୍ମଣ ବୋଇଲେ ଦେବ ଏହା କିମ୍ପା କହ
ଶାନ୍ତଶୀଳ ହୋଇ ଦୁଷ୍ଟଜନ ବୁଦ୍ଧି ବହ ।
ଅଯୋଧ୍ୟା ନାୟକ ତୁମ୍ଭେ ଅଟ ରଘୁବୀର
ତୁମ୍ଭର ଅଟୁ ହେ ଆମ୍ଭେମାନେ ପରିବାର ।
ଚାଲ ବେଗେ ଅଯୋଧ୍ୟାକୁ ନ ବିଚାର ଆନ
ଜନନୀମାନଙ୍କୁ ଯାଇ କରିବା ଦର୍ଶନ ।
କହୁଁ କହୁଁ ସନ୍ଧ୍ୟାକାଳ ହୋଇଲା ପ୍ରବେଶ
ସନ୍ଧ୍ୟା ତର୍ପଣାଦି ଶେଷ କଲେ ରଘୁଶିଷ୍ୟ ।
ପିତୃଗଣ ଦେବତାଙ୍କୁ କଲେ ଜଳଦାନ
ବହୁ ଫଳ ମୂଳ ଆଣି ଦେଲା ହନୁମାନ ।
ଜାନକୀ ଲକ୍ଷ୍ମଣ ଯାଇ ସ୍ନାନ କଲେ ବେଗେ
ଫଳ ମୂଳ ବାଣ୍ଟି ଦେଲେ ରାମ ତିରିଭାଗେ ।
ଭୋଜନ ସାରିଣ ରାମ କଲେ ଆଚମନ
କଲେକ କୋମଳପତ୍ର ଶଯ୍ୟାରେ ଶୟନ ।
ଶୋଇଲେ ଜାନକୀଦେବୀ ଶ୍ରୀରାମଙ୍କ କୋଳେ
ବସିଲେ ପବନ ସୁତ ଯାଇ ପାଦତଳେ ।
ଏଥୁଅନ୍ତେ ଯାହା ହେଲା ଶୁଣ ଗୋ ପାର୍ବତୀ
ଯେମନ୍ତ ଅଯୋଧ୍ୟା ନଗରର ଦିବ୍ୟସ୍ଥିତି ।
ପାଟରାଣୀ କଉଶଲ୍ୟା ଗଣୁଥିଲେ ଦିନ
ଚଉଦ ବରଷ ହେଲା ଆଜହୁଁ ସମ୍ପୂର୍ଣ୍ଣ
ରାତିରେ ଡାକିଲେ ସେ ସୁମନ୍ତ ମନ୍ତ୍ରୀବର
ବନବାସ ଶେଷହେଲା ମୋର ପୁତ୍ରଙ୍କର ।
ଉତ୍ସବ କରାଅ କଟକରେ ବେଗେ ଯାଇଁ
ଘୋଷଣା ଦିଆଅ ବୀର ତୂରୀକୁ ବଜାଇ ।
ହାଟ ବାଟ ଦାଣ୍ଡମାନ ଝରକାଇ ଦିଅ
ମଣ୍ଡାଇଣ ନଗରରେ ପସରା ବସାଅ ।
ଅଧିକ ଚଉଦଦିନ ହୋଇଲେହେଁ ଗତ
କାହିଁପାଇଁ ବନରୁ ମୋ ନ ଆସନ୍ତି ସୁତ ।
ଏତେବୋଲି କଉଶଲ୍ୟା ବେଗେ ଗଲେ ଚଳି
ବଶିଷ୍ଠଙ୍କ ପାଦତଳେ କଲେ ନଉଛାଳି ।
କଲ୍ୟାଣ ବାଞ୍ଛିଲେ ତହିଁ ମୁନି ବ୍ରହ୍ମପତି
ତୁମ୍ଭଙ୍କୁ ଶ୍ରୀରାମଚନ୍ଦ୍ର ହେଉ ପରାପତି ।
କୌଶଲ୍ୟା ବୋଇଲେ ଶୁଣ ଆହେ ତପୋଧନ
ଚଉଦ ବରଷ ହୋଇଥିଲେହେଁ ସମ୍ପୂର୍ଣ୍ଣ ।
କେତେଦିନେ ଆସିବେକ ମୋହର କୁମର
ବିଚାର କହିବା ହେଉ ଆହେ ମୁନିବର ।
ଶୁଣିଣ ବସିଲେ ଧ୍ୟାନକରି ବ୍ରହ୍ମପତି
ଧ୍ୟାନରେ ଜାଣିଲେ ବଚନେ କହିଲ ରଘୁପତି ।
ସରଯୂ କୂଳରେ ବସିଛନ୍ତି ତିନିଜଣ
ବୋଇଲେକ ଅଇଲେଣି ଶ୍ରୀରାମ ଲକ୍ଷ୍ମଣ ।
ଅର୍ଘ୍ୟଥାଳୀ ଘେନ ଏବେ ବାହାର ଗୋ ମାଏ
ଶ୍ରୀରାମଙ୍କୁ ଆଣିଯିବା ନଦୀକୂଳ ଯାଏ ।
ଉଷତ ହୋଇଲେ ଶୁଣି କରି ମହାମାୟୀ
ସ୍ନାନ ଆଦି ନିତ୍ୟକର୍ମ ସାରିଲେକ ଯାଇ ।
ସାଜିଲେ ଶଉଚ ହୋଇ ବେଗେ ଅର୍ଘ୍ୟଥାଳୀ
ପୂଜି ଗ୍ରାମଦେବତୀଙ୍କୁ ଦେଲେ ନେଇ ବଳି ।
ପ୍ରଣମିତ ହୋଇ ଦେବ ଯୋଡ଼ି ବେନିକର
ଲକ୍ଷେକ ସ୍ତୁଗଳ ଦେବି ଆସୁ ମୋ କୁମର ।
ଯେବେ ସର୍ବମଙ୍ଗଳା ଗୋ ହୋଇଲୁ ସଦୟ
ଅଯୋଧ୍ୟାରେ ରାଜା ଆସି ହେଉ ମୋ ତନୟ ।
ଏମନ୍ତ ପ୍ରକାରେ ତାଙ୍କୁ ମଣାଇ କହିଲେ
ହର ଗଉରୀଙ୍କ ପାଶେ ଯାଇଣ ମିଳିଲେ ।
କର ଯୋଡ଼ି ରାମ ମାତା କରନ୍ତି ଯେ ସ୍ତୁତି
ଦୟାକର ଆସୁ ମୋର ପୁଅ ରଘୁପତି ।
ଏହି ବର ଦିଅ ପ୍ରଭୁ ପାର୍ବତୀ ରମଣ
ଦୟାକର ମୋତେ ସ୍ୱାମୀ ଆସୁ ମୋ ନନ୍ଦନ ।
ଏତେବୋଲି ମାଏ ତହୁଁ ହୋଇଲେ ବାହାର
ସବୁ ରାଣୀମାନେ ଛନ୍ତି ସଙ୍ଗତେ ତାଙ୍କର ।
ଜାନକୀଙ୍କ ତିନିଭଗ୍ନୀ ଅର୍ଘ୍ୟଥାଳୀ ଘେନ
ବାହାର ହୋଇଲେ ଶୁଣି କୌଶଲ୍ୟାଙ୍କ ବାଣୀ
ଅଯୋଧ୍ୟା କଟକଯାକ ପଡ଼ିଲା ଚହଳ
କେ ବୋଲେ ଅଇଲେ ରାମ ଦେଖିଯିବା ଚାଲ
କେ ବୋଲନ୍ତି ଆଣିବାକୁ ଯାଉଛନ୍ତି ମାଏ
ଏତେ ବୋଲି ଗୋଡ଼ାଇଲେ ପଛରେ ସଭିଏଁ
ଘର ଦ୍ୱାର ଛାଡ଼ିକରି ଧାମନ୍ତି ସଇନେ
ଭରତ ବାହାର ହେଲେ ଘେନି ଶତ୍ରୁଘନେ
ପାତ୍ର ମିତ୍ର ଦଣ୍ଡଛତ୍ର ଅମାତ୍ୟ ସହିତ
ବୀର ତୂରୀ ଶବଦରେ ପୃଥ୍ୱୀ ଚମକିତ ।
ବ୍ରାହ୍ମଣ ଜ୍ୟୋତିଷ ଭାଟ ସୂତକାରୀ ଜନେ
ଶ୍ରୀରାମ ଅଇଲେ ବୋଲି ଧାମନ୍ତି ବହନେ ।

ଅଯୋଧ୍ୟାର ପୁରଯାକ ଗହଳ ଚହଳ
ଶ୍ରୀରାମ ଅଇଲେ ବୋଲି ଲାଗିଗଲା ଗୋଳ ।
ଦାଣ୍ଡରେ ଯିବାକୁ ପଥ କେହି ନ ପାଆନ୍ତି
ଉବୁରା ଉବୁରି ହୋଇ ସମସ୍ତେ ଧାଆଁନ୍ତି ।
ହୁଳହୁଳି ଶବ୍ଦ ଶୁଭୁଅଛି ନିରନ୍ତର
ରାତ୍ର ଅର୍ଦ୍ଧ ସମୟରେ ହୋଇଲେ ବାହାର ।
ପ୍ରହରେକ ରାତ୍ର ଥାଉଁ ଥାଟ ଚଳାଗଲେ
ସରଯୂ ନଦୀର କୂଳେ ଯାଇଣ ମିଳିଲେ ।
ଜାନକୀ ଘେନିଣ ଶୋଇଛନ୍ତି ରଘୁନାଥ
କୁହାକୁହି ହେଉଛନ୍ତି ବନ କଥାମାନ ।
ବାଦ୍ୟର ଶବଦ ଯହୁଁ ଶୁଭିଲାକ ତହୁଁ
ଶଯ୍ୟା ଛାଡ଼ି ଉଠିଲେ ଶ୍ରୀରାମ ବଇଦେହୀ ।
ଶ୍ରୀମୁଖକୁ ପଖାଳିଲେ ନଦୀ ଜଳ ଘେନି
କି ଶବଦ ବୋଲି ପଚାରନ୍ତି ରଘୁମଣି ।
ଧନୁ ଧରି ଉଠି ବେଗେ ସୁମିତ୍ରାଙ୍କ ସୁତ
ଦେଖିଲେ ସରଯୂ କୂଳେ ଗହ ଗହ ଥାଟ
ଚାହିଁଲେ ନିରୀକ୍ଷିକରି ସୁମିତ୍ରା ନନ୍ଦନ
ରଥ ଗଜ ଅଶ୍ୱ ଆଦି ଅଯୋଧ୍ୟାର ସୈନ୍ୟ ।
ବୋଇଲେ ରାମଙ୍କୁ ତୁମ୍ଭେ ଶୁଣ ସୀତାନାଥ
ଅଯୋଧ୍ୟାର ଥାଟ ଘେନି ଆସନ୍ତି ଭରତ ।
ଆମ୍ଭଙ୍କୁ ଏଠାରୁ ପ୍ରାୟ ଦେବେ ଘଉଡ଼ାଇ
ଅଯୋଧ୍ୟା କଟକୁ ଆସୁଛନ୍ତି ଏଥିପାଇଁ ।
ଥାଟ ଘେନି ଚଳାଉଛି ଦାରୁଣ ପାଇକ
ନିଶ୍ଚୟ କରିବେ ଯୁଦ୍ଧ ହେ ରଘୁନାୟକ ।
ମୋତେ ଯେବେ ଆଜ୍ଞା ଦେବ ପ୍ରଭୁ ରଘୁନାଥ
ସୈନ୍ୟବଳ ସହିତେ ମୁଁ ମାରିବି ଭରତ ।
ଶୁଣିକରି ହସିଲେକ କୌଶଲ୍ୟା ତନୁଜ
ରାଜା ଦେଲେ ଘଉଡ଼ାଇ ରାଜ୍ୟରେ କି କାର୍ଯ୍ୟ
ସେ ଯେବେ ନ ଦେବ ମୋତେ ରାଜ୍ୟେ ପଶିବାକୁ
ଜାନକୀ ଘେନିଣ ପୁଣି ଯିବି ବନସ୍ତକୁ ।
ତୁମ୍ଭେ ଯାଇ ଭରତର ସେବା କରୁଥିବୁ
ତୋର ସଙ୍ଗେ ଗୋଳ କଲେ ବନସ୍ତେ ପଶିବୁ
କହୁଁ କହୁଁ ଉଦେ ହେଲେ ପ୍ରଭୁ ଦିବାକର
ସରଯୂ ନଦୀକୁ ଥାଟ ସୈନ୍ୟ ହେଲେ ପାର ।
ଦେଖୁଥିଲେ ଉଭା ହୋଇକରି ଦେବୀ ସୀତା
ଦେଖି ଶାଶୁମାନଙ୍କୁ ସେ ନୁଆଇଁଲେ ମଥା ।
ଅଞ୍ଚଳ ଉଢ଼ାଡ଼ି ଦେବୀ ହସିଲେ ଝଟତି
ବୋଇଲେ ରାମଙ୍କୁ ତୁମ୍ଭ ମାତା ଆସୁଛନ୍ତି ।
ଶୁଣିକରି ସଙ୍କୁଚିତ ହୋଇଲେ ଶ୍ରୀରାମ
ସୀତାଙ୍କୁ ବୋଇଲେ ତୁମ୍ଭେ କରି ଯା ପ୍ରଣାମ
ଉଚେ ଥାଇ ଚାହିଁଦେଲେ ପ୍ରଭୁ ଚାପଧର
ବଶିଷ୍ଠ ସହିତ ଆସୁଛନ୍ତି ମନ୍ତ୍ରୀବର ।
ଭରତ ରାମଙ୍କୁ ଦେଖି ରଥରୁ ଉତୁରି
କରପଦ୍ମ ଯୋଡ଼ି ଉଭା ଦନ୍ତେ କୁଟାଧରି ।
ଭରତଙ୍କୁ ଦେଖି ଦେବ ଶ୍ରୀରଘୁନନ୍ଦନ
ଆନନ୍ଦରେ ଚକ୍ଷୁ ଦୁଇ କଲେ ଥନ ଥନ ।
ପୁତ୍ରଙ୍କୁ ଚାହିଁଣ ଦେବୀ କଉଶଲ୍ୟା ରାଣୀ
ଆନନ୍ଦେ ବହିଲା ବେନି ନେତ୍ରୁ ଅଶ୍ରୁପାଣି ।
ହା ରାମ ହା ରାମ ବୋଲି ବେଗେ ବାହୁଟୋଳ
ଶୋକଭରେ ମାତାମାନେ ଛାଡ଼ନ୍ତି ବୋବାଳି ।
କରଯୋଡ଼ି ରାମ ଯାଇଁ ପଡ଼ିଲେ ପାଦରେ
କଉଶଲ୍ୟା ରାଣୀ ବେଗେ ଧଇଲେ କୋଳରେ
ସୀତା କଲେ ଶାଶୁଙ୍କର ଚରଣେ ବନ୍ଦନ
ପୁତ୍ର ବଧୂ କୋଳେ ଘେନି କରନ୍ତି ରୋଦନ ।
ସୁମିତ୍ରାଙ୍କ ପାଦତଳେ ଓଳଗିଲେ ରାମ ।
କୈକେୟୀଙ୍କ ପାଦତଳେ କଲେକ ପ୍ରଣାମ ।
ଓଳଗିଲେ ବଶିଷ୍ଠଙ୍କ ପାଦେ ରଘୁରାଣ
ମୁନି ପାଦେ ଓଳଗିଲେ ଜାନକୀ ଲକ୍ଷ୍ମଣ ।
ଭରତ ଶତ୍ରୁଘ୍ନ ପଡ଼ିଲେକ ରାମ ପାଦେ
ଦେଖଣାହାରୀଏ ଆସି ଦେଖନ୍ତି ବିଷାଦେ ।
ବୋଲୁଛନ୍ତି ରଘୁସାଇଁ ବଶିଷ୍ଠଙ୍କୁ ଚାହିଁ
ଏମାନଙ୍କୁ ସଙ୍ଗେ ଘେନି ଅଇଲ କିମ୍ପାଇଁ ।
ମୁଁ ତ ଅଟେ ବନବାସୀ ବନସ୍ତେ ମୋ ଘର
ପୂର୍ଣ୍ଣ ନାହିଁ ବନବାସ ଆବର ମୋହର ।
ବଶିଷ୍ଠ ବୋଇଲେ ଆଉ ନାହିଁ ବନବାସ
ଊନବଂଶ ଦିନ ପୁଣି ହେଲାଣି ବିଶେଷ ।
ଚାଲ ଏବେ ଅଯୋଧ୍ୟାକୁ ନ ବିଚାର ଆନ
ସମ୍ଭାଳ ତୋହର ରାଜ୍ୟ ଯାଇଁ ରଘୁନାଥ ।
ଶ୍ରୀରାମ ବୋଇଲେ ଶୁଣ ବ୍ରହ୍ମାଙ୍କର ସୁତ
ଅଯୋଧ୍ୟାର ରାଜା ସିନା ଅଟଇ ଭରତ ।
ସେ ବୋଇଲେ ସିନା ଯିବି ଅଯୋଧ୍ୟା ନଗର
ନୋହିଲେ ତ ମୁନି ମୋର ବନସ୍ତରେ ଘର ।

ଶୁଣିଣ ଭରତ କମ୍ପେ ଥରଥର ହୋଇ
ସେ ଦେବ ଶ୍ରୀରାମ ବୋଲି ପାଦରେ ପଡ଼ଇ
ତୁ ସିନା ଅଯୋଧ୍ୟା ରାଜା ତୁ ସିନା ଠାକୁର
ତୋହର ଆଜ୍ଞାରେ ଜଗିଅଛୁ ଏହି ପୁର ।
ଆସ୍ଥାନେ ବସିବାକୁ ମୁଁ ଭାଜନ ନୁହଇ
ଡଗର ହୋଇଣ ରାଜ୍ୟ ବୁଲୁଥାଇ ମୁହିଁ ।
ଭଲ ମନ୍ଦ ସିନା ମୁହିଁ ବୁଝଇ ରାଜ୍ୟର
ସିଂହାସନେ ଥୋଇ ରହି ପାଦୁକା ତୁମ୍ଭର ।
ମୁହିଁ କି ତୁମ୍ଭର ଛତ୍ର ବହନେ ଭାଜନ
ଅଯୋଧ୍ୟାକୁ ଏବେ ବିଜେ କରନ୍ତୁ ରାଜନ ।
ଏବେ ଯେ ସମ୍ଭାଳ ଅଯୋଧ୍ୟାକୁ ରଘୁସାଇଁ
ଅକାରଣେ କୋପକଲ ମୋଠାରେ କମ୍ପାଇ ।
କହୁଁ କହୁଁ ଘନ ଘନ କାନ୍ଦିଲେ ଭରତ
ନ କାନ୍ଦ ନ କାନ୍ଦ ପ୍ରବୋଧନ୍ତି ରଘୁସୁତ ।
ତୁ କମ୍ପା ବେଦନ କରୁଅଛୁରେ ସୋଦର
ମାତା ସିନା ଭୁଆଇଲେ ଏତେକ ତୋହର ।
ପୁଣି ହେଲ ରାଜା କଲେ ସଫଳ ଲୋଚନ
କଷ୍ଟ ସିନା ପାଇଲୁରେ ଆମ୍ଭେ ତିନିଜଣ ।
ଶୁଣିଣ ନଗର ଲୋକେ କଲେ ହାହାକାର
କୈକେୟୀ ରାଣୀଙ୍କୁ ସର୍ବେ କରନ୍ତି ଧିକ୍କାର ।
ଶ୍ରୀରାମ କହନ୍ତି ବଶିଷ୍ଠଙ୍କ ମୁଖ ଚାହିଁ
ଭରତକୁ କୁହ ତୁମ୍ଭେ ରାଜ୍ୟ କରୁ ଯାଇ ।
ମୁଁ କମ୍ପା ଛଡ଼ାଇ ନେବି ତାର ରାଜପଣ
କରିବ ଏ ନନ୍ଦୀକୂଳେ ନଗର ଭୁଆଣ ।
ଶ୍ରୀରାମ ବନବାସ କଥା ଶୁଣି ନଗ୍ର ଲୋକେ
ହାହାକାର କରି ଶୋକ କରନ୍ତି ଯେ ଥୋକେ
ବଶିଷ୍ଠ ବୋଇଲେ ଶ୍ରୀରାମଙ୍କ ମୁଖ ଚାହିଁ
ଭରତକୁ କୋପ ତୁମ୍ଭେ କରୁଛ କମ୍ପାଇ ।
ଦଇବ ଯୋଗେ ତୁମ୍ଭର ହେଲା ବନବାସ
ପରଂବ୍ରହ୍ମ ପୁରୁଷ ତୁ ଅଟୁ ରଘୁ ଶିଷ୍ୟ ।
ଅଯୋଧ୍ୟାକୁ ଚାଲ ରଥେ କରି ଆରୋହଣ
ସିଂହାସନେ ବସି ସୁଖେ ପାଳ ପ୍ରଜାଗଣ ।
ବଶିଷ୍ଠଙ୍କ କଥା ମାନି ପ୍ରଭୁ ରଘୁବୀର
ଜାନକୀଙ୍କୁ ଘେନି ବିଜେ ବିମାନ ଉପର ।
ହାଣ୍ଡୋଳା ଉପରେ ବିଜେକଲେ ମାତାମାନେ
ଆନନ୍ଦେ ଚଢ଼ିଲେ ସର୍ବେ ଯେ ଯାହାର ଯାନେ ।
ଚଉଦୋଳ ଆରୋହିଲେ ଜାନକୀ ଭଗିନୀ
ଭରତ ଶତ୍ରୁଘ୍ନ ଗଲେ ଘେନିଣ ସଇନ ।
ହୁଳହୁଳି ଦିଅନ୍ତି ଯେ ମିଳି ନାରୀଗଣ
ଅନ୍ଧାର ନିଶାରେ କି ଉଦୟ ହେଲେ ଜହ୍ନ ।
ହାଣ୍ଡୋଳା ଉପରେ ବିଜେ କଲେ ତିନିରାଣୀ
ଅନ୍ତଃବାଡ଼ ମଧ୍ୟେ ବିଜେ ଜାନକୀ ଭଉଣୀ ।
ସରଯୂକୁ ପାରହୋଇ ଗଲେ ରଘୁବୀର
ଗହଳରେ ଉଚ୍ଛୁଳଇ ଅଯୋଧ୍ୟା ନଗର ।
ସିଂହଦ୍ୱାରରେ ପ୍ରବେଶିଲେ ଶ୍ରୀରାମଙ୍କୁ ଘେନି
ଅର୍ଘ୍ୟ ଘେନି ବନ୍ଦାପନା କରନ୍ତି କାମିନୀ ।
ସୀତା ଘେନି ମାତାଙ୍କୁ ଯେ ଓଳଗି ହୋଇଲେ
ଭିତର ପୁରରେ ଯାଇ ଶ୍ରୀରାମ ରହିଲେ ।
ଚନ୍ଦ୍ରଶାଳା ପୁରେ ବିଜେ କୋଦଣ୍ଡ ଧାରଣ
ହନୁମନ୍ତଙ୍କୁ ଗୌରବ କଲେ ରଘୁରାଣ ।
ସ୍ନାହାନ ଶଉଚ ଆଦି ସାରି ରଘୁବୀର
ପିତାଙ୍କ ତର୍ପଣ ସାରି ଆସି ନିଜଘର ।
ନୂତନ ବସନ ପିନ୍ଧି ମର୍ଜନା ହୋଇଲେ
ଦେବ ପୂଜା ସାରି ରାମ ଲକ୍ଷ୍ମଣେ ରାଇଲେ ।
ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରାଇ ଭୋଜନ
ଧନ ବସ୍ତ୍ର ଅଳଙ୍କାର ବିପ୍ରେ ଦେଲେ ଦାନ ।
ଗୋଦାନ ଯେ ଅନ୍ନଦାନ ଭୂମିଦାନ ଦିଅନ୍ତି
ଦାନ ପାଇ ବିପ୍ରମାନେ ଆନନ୍ଦ ହୁଅନ୍ତି ।
ମାତାଙ୍କୁ ଓଳଗି ହେଲେ ପ୍ରଭୁ ରଘୁବୀର
କଲ୍ୟାଣ କରନ୍ତି ମାଁଏ ଯଶ ଲାଭ କର ।
ମଣୋହି ସାରଣ ସେ କୋଦଣ୍ଡ ରାମସାଇଁ
ବଶିଷ୍ଠଙ୍କୁ ଘେନି ବିଜେ ପଲଙ୍କରେ ଯାଇ ।
ମାତାମାନେ ଅଛନ୍ତି ସୁମନ୍ତ ମନ୍ତ୍ରୀବର
ପାନ୍ଥ ମିତ୍ର ରହିଛନ୍ତି ଭରତ ମହାବୀର ।
କହନ୍ତି ବନସ୍ତ କଥା କୋଦଣ୍ଡ ଧାରଣ
ଦୁଃଖିତ ହୁଅନ୍ତି ଶୁଣି ଅଯୋଧ୍ୟାର ଜନ ।
ରାବଣର ପୁର କଥା ଯୁଦ୍ଧର ବାରତା
ଚୋରାଇ ରାବଣ ଯେମନ୍ତେ ଘେନିଗଲା ସୀତା ।
ସମୁଦ୍ର ବାନ୍ଧିଲେ ଯେମନ୍ତେ ନଳ ବାଳିବୀର
ହନୁକୁ ପ୍ରଶଂସା କଲେ ପ୍ରଭୁ ରଘୁବୀର ।
ଏ ହନୁ ପ୍ରସାଦେ ପାଇଲି ମୁଁ ବଇଦେହୀ
ଲଙ୍କାପୁରେ ଠାବକଲା ସିନ୍ଧୁପାର ହୋଇ ।

ଏ ସନ୍ଦେଶ ଦେବାରୁ ମୁଁ ସୈନ୍ୟ ଘେନଗଲି
ରାବଣକୁ ବଧକରି ଜାନକୀ ଆଣିଲି ।
ଶୁଣି ପୁରଲୋକେ ହନୁଠାରେ ଶ୍ରଦ୍ଧା କଲେ
ଧନ୍ୟରେ ବାନର ଗୋଟି ବୋଲିଣ ବୋଇଲେ
କଥା କହୁ କହୁ ରାମ କଲେକ ଶୟନ
ନିଶବଦ ହେଲେ ଯହୁଁ ଅଯୋଧ୍ୟାର ଜନ ।
ରାତ୍ରିଗୋଟି ପାହିଗଲା ଶୁଭେ ଶଙ୍ଖଧ୍ୱନି
ଶଯ୍ୟାରୁ ଉଠିଲେ ରାମ ଧନୁଶର ଘେନି ।
ନିତ୍ୟକର୍ମ ସାରି ବେଗେ ପ୍ରଭୁ ରଘୁବୀର.
ହନୁମନ୍ତ ଲକ୍ଷ୍ମଣଙ୍କୁ ଘେନି ସଙ୍ଗତରି ।
ଅଯୋଧ୍ୟାପୁରକୁ ବୁଲି ଦେଖନ୍ତି ଶ୍ରୀରାମ
ଘରେ ଘରେ ନ ଗୁଡ଼ନ୍ତି କୌଶଲ୍ୟା ନନ୍ଦନ ।
ପିତା ଶମଶାନେ ରାମ ମିଳିଲେକ ଯାଇ
ଭରତ ଆଙ୍ଗୁଳି ଘେନି ଦିଅନ୍ତି ଦେଖାଇ ।
ପିତା ଶମଶାନ ବୋଲି ଶୁଣିଲେ ଶ୍ରୀରାମ
ଅନେକ ରୋଦନ କଲେ କୋଦଣ୍ଡଧାରଣ ।
ଭରତ ପ୍ରବୋଧି ଶୋକ ଶାନ୍ତ କରାଇଲେ
ତହୁଁ ଯାଇଁ ଜାନକୀଙ୍କ ପୁରରେ ମିଳିଲେ ।
ଭୋଜନ ସାରିଣ ତହୁଁ ଶୋଇଲେ ଶ୍ରୀରାମ
ପାଦତଳେ ବସିଲେକ ବୀର ହନୁମାନ ।
ଏ ସମୟେ ଯାହା ହେଲା ଶୁଣ ଗୋ ପାର୍ବତୀ
ବିଲଙ୍କା କାଣ୍ଡର କଥା ଅଟେ ଦିବ୍ୟରୀତି ।
ଏଥୁଅନନ୍ତରେ ବହିଗଲା ପାଞ୍ଚଦିନ
ଅଯୋଧ୍ୟା ପୁରରେ ସୁଖେ ରହିଲେ ଶ୍ରୀରାମ ।
ଅଭିଷେକ ନିମନ୍ତେ ବଶିଷ୍ଠ ବ୍ରହ୍ମସୁତ
ଭରତଙ୍କୁ ସୁମନ୍ତଙ୍କୁ ଡକାଇଲେ ତତ ।
ଶତ୍ରୁଘ୍ନ ସହିତେ ପାଞ୍ଚ ଘେନି ମୁନିବର
ଶ୍ରୀରାମଙ୍କ ଅଭିଷେକ କରନ୍ତି ବିଚାର
ବଶିଷ୍ଠ ବୋଲନ୍ତି ହୋ ସୁମନ୍ତ ମନ୍ତ୍ରୀବର
ଅଭିଷେକ ନିମନ୍ତେ ଯୋଗାଡ଼ ବେଗକର ।
ନଗ୍ର ମଣ୍ଡିଆଅ ପୁରେ ଘୋଷଣା ଦିଆଅ
ବନ୍ଧୁବାନ୍ଧବଙ୍କୁ ବେଗେ ଗୁଆ ଗୁଳିଦିଅ ।
ମକର ମାସ ଏ ସବୁମାସରେ ଉତ୍ତମ
ଅର୍କବାର ପୁଣ ଶୁକ୍ଳ ଦୁଆଦଶୀ ଦିନ ।
ବାଣିଜ୍ୟକରଣ ଯେ ଅମୃତ ନାମେ ଯୋଗ
ମକର ସଙ୍କ୍ରାନ୍ତିରୁ ଦଶଦିନ ଭୋଗ ।
ଈଶାନ୍ୟେ ଯୋଗିନୀ ଅଛୁ ଶୁଭ ସେହିଦିନ
ଅଭିଷେକ ହେବେ ରାମ ତେଉ ଦଢ଼ମାନ ।
ଶୁଣିଣ ଭରତ ବୀର ହରଷ ହୋଇଲା
ଅଯୋଧ୍ୟା ନଗରେ ଯେ ଘୋଷଣା ଦିଆଇଲା ।
ଅଯୋଧ୍ୟାରେ ଅଭିଷେକ ହେବେ ରଘୁବୀର
ବାଟ ଦାଣ୍ଡେ ବସାଇଲେ ବହୁତ ବଜାର ।
ନଗ୍ର ଲୋକେ ଶୁଣି ଅତି ଆନନ୍ଦ ହୋଇଲେ
ଯେ ଯାହାର ପୁରମାନ ହସ୍ତେ ମଣ୍ଡାଇଲେ ।
ନାନାବିଧ ପୁଷ୍ପମାଳା ବାନ୍ଧି ଘରେ ଘରେ
ଉଛୁଳି ପଡ଼ଇ ବାଦ୍ୟ ଅଯୋଧ୍ୟା ନଗରେ ।
ଅଭିଷେକ ଦିନ ଯହୁଁ ହୋଇଲା ପ୍ରବେଶ
ବିବିଧ ଉତ୍ସବ ହେଲା ସେ ଅଯୋଧ୍ୟା ଦେଶ ।
ଶ୍ରୀରାମଙ୍କ ଆଜ୍ଞାପାଇ ବଶିଷ୍ଠ ମିଳିଲେ
ଅଭିଷେକ ସ୍ଥାନେ ବିଜେ ହୁଅନ୍ତୁ ବୋଇଲେ ।
ଶୁଣିଣ ହରଷ ହେଲେ ଦଶରଥ ସୁତ
ଶିରରେ ବାନ୍ଧିଲେ ଯାଇଁ ସୁବର୍ଣ୍ଣ ମୁକୁଟ ।
ନାନାବର୍ଣ୍ଣ ପୁଷ୍ପମାଳ ମୁକୁଟେ ବାନ୍ଧିଲେ
ମୁକୁଟ ଉପରେ ହୀରା ରତନ ଖଞ୍ଜିଲେ ।
କର୍ଣ୍ଣରେ କୁଣ୍ଡଳ ଝୁଲେ ଗଳେ ମୋତିମାଳ
ଦୋସରି ପଦକ ଆଣି ଖଞ୍ଜିଲେ ତହିଁର ।
ବାହୁରେ ବାହୁଟି ଦିଶେ ଅତି ଶୋଭାବନ
ହୃଦୟେ ପଇତା ଦିଶେ ସୁବର୍ଣ୍ଣ ଯେସନ ।
କଟୀରେ କାଛେଣି କନ୍ଧେ ବିଚାର ଉତ୍ତରୀ
କରରେ କୋଦଣ୍ଡ ଧରି ପ୍ରଭୁ ରଘୁଧାରୀ ।
ଶୁଭବେଳା ଜାଣି ଅନୁକୂଳ କରାଗଲେ
ପାଞ୍ଚ ମିତ୍ର ଅମାତ୍ୟ ଛନ୍ତି ତାଙ୍କ ଭୁଲେ ।
ମୁଦୁସୁଲୀମାନେ ଶୁଣି ବେଗେ ଚଳିଗଲେ
ଜାନକୀ ଦେବୀଙ୍କି ଯାଇ ବେଶ କରାଇଲେ ।
ବେଗେ ସ୍ନାହାନ କରାଇ କୁଣ୍ଡାଇଲେ କେଶ
ଜୁଡ଼ାଗୋଟି ନିର୍ମାଣି ବାନ୍ଧିଲେ ଗଭା ପୁଷ୍ପ ।
ସୁବେଣୀ ଜଟାମଣ୍ଡଳୀ ଆକାରେ ଖଞ୍ଜିଲେ
ମାଣିକ୍ୟରେ ଝୁମ୍ପା ଜଟ ମୂଳରେ ବାନ୍ଧିଲେ ।
କର୍ଣ୍ଣରେ ତାଟଙ୍କ କାପ ନାସାରେ ବେସର
ଦେନ୍ତି ନୟନେ କଜ୍ଜ୍ୱଳ ଶିରରେ ସିନ୍ଦୂର ।
ନାଶାରେ ବସଣୀ ଦିଶେ ଅତି ଶୋଭାବନ
ଶରଦ ଚନ୍ଦ୍ରମା ପରି ଦିଶଇ ବଦନ ।

ଦୋସର ମୁକୁତା ହାର ଲମ୍ବାଇ ଗଳାରେ
ସୁବର୍ଣ୍ଣ ପଦକ ଲମ୍ବାଇଲେ ହୃଦୟରେ ।
ସୁବର୍ଣ୍ଣର ବାଜୁବନ୍ଧ ବାହୁରେ ବାନ୍ଧିଲେ
ବେନିହସ୍ତେ ସୁବର୍ଣ୍ଣର କଙ୍କଣ ଖଞ୍ଜିଲେ ।
ବିଚିତ୍ର କାଞ୍ଚୁଲି ଏକ ଭିଡ଼ିଲେ ଛାତିରେ
ଝୁଣୁଝୁଣୁ ଘାଗୁଡ଼ି ଯେ ବାନ୍ଧିଲେ କଟୀରେ ।
କୁଙ୍କୁମ ଲେପିଣ ଅଙ୍ଗ କଲେ ଶୋଭାବନ
ସୁଝୀନ ବସନ ଶାଢ଼ୀ ପିନ୍ଧାଇ ବହନ ।
ନେତ ଶାଢ଼ୀ ତା ଉପରେ ଉପରଣ ଦେଲେ
ବେନି ଚରଣରେ ବେନି ନୂପୁର ଖଞ୍ଜିଲେ ।
ସୁବେଶ କରଣ ଅନୁକୂଳ କରାଇଲେ
ଆସ୍ଥାନର ଉପରକୁ ତହୁଁ ଘେନିଗଲେ ।
ଶ୍ରୀରାମ ବିଜୟ କଲେ ଆସ୍ଥାନ ଉପରେ
ଜାନକୀଙ୍କି ବସାଇଲେ ଆପଣା କୋଳରେ ।
ହୁଳହୁଳି ଶବଦ ପୂରିଲା ଘନ ଘନ
ଉଚ୍ଛୁଳିଲା ଶଙ୍ଖ ଭେରୀ ଶବଦେ ଗଗନ ।
ଅଭିଷେକ ଆସ୍ଥାନରେ ବିଜୟ ଶ୍ରୀରାମ
ପାତ୍ର ମନ୍ତ୍ରୀମାନେ ଆସି କଲେ ଦରଶନ ।
ଈଶ୍ୱର କହନ୍ତି ଆଗୋ ଶାକମ୍ବରୀ ଶୁଣ
ଅପୂର୍ବ ଚରିତ ଏ ବିଲଙ୍କା ରାମାୟଣ ।
ଏକ ଲୟ କରଣ ତୁ ଶୁଣ ଗୋ ପାର୍ବତୀ
ଦେବତାଙ୍କୁ ଘେନି ସ୍ୱର୍ଗେ ବିଜେ ସୁରପତି ।
ବ୍ରହ୍ମା ବୃହସ୍ପତି ଯମ ବରୁଣ କୁବେର
ଅଗ୍ନି ନଇଋତ ଆଦି ଦଶଦିଗପାଳ ।
ତେତିଶ କୋଟି ଦେବତା ହୋଇଛନ୍ତି ମେଳ
ଏ ସମୟେ ଅଯୋଧ୍ୟାରେ ଶୁଭେ ହୁଳହୁଳି ।
ପଚାରଇ ସୁନାସୀର ବ୍ରହ୍ମା ମୁଖ ଚାହିଁ
ଅଯୋଧ୍ୟାନଗରେ ଆଜ ଆନନ୍ଦ କିମ୍ପାଇ ।
ବିଧାତା ବୋଲଇ ଆଜ ରାମ ଅଭିଷେକ
ତେଣୁ ହୁଳହୁଳି ଦିଅନ୍ତି ଅଯୋଧ୍ୟାର ଲୋକ ।
ଶୁଣିକରି ଶଚୀନାଥ ଆନନ୍ଦ ହୋଇଲେ
ବିଷ୍ଣୁଙ୍କର ଅଭିଷେକ ଦେଖିବା ବୋଇଲେ
ଦେବତାମାନଙ୍କୁ ଘେନି ବିଜେ ସୁନାସୀର
ଆରମ୍ଭ କରିଲେ ସଭା ବାରସ୍ୱତୀ ପୁର ।
ଏସନ ସମୟେ ଯମ ଦେବତା ଅଇଲେ
ସଭାମଧ୍ୟେ ଶଚୀନାଥ ଆଗରେ କାନ୍ଦିଲେ ।

ଇନ୍ଦ୍ର ପଚାରିଲେ କାନ୍ଦୁଅଛ କାହିଁପାଇଁ
ଯମ ବୋଇଲେ ମୋ ଅଧିକାରେ କାର୍ଯ୍ୟନାହିଁ
ସର୍ବ ଜନ୍ତୁଙ୍କ ଉପରେ ଦେଲେ ଅଧିକାର
ବାଡ଼ ଛାଟି ଖଟିଣ ମୁଁ ମଲି ଅସୁରର ।
ଇନ୍ଦ୍ର ପଚାରିଲେ କାହାକୁ ତୁ ସେବାକରୁ
ବିଷ୍ଣୁ ଆଜ୍ଞା ବନ୍ଧ ଆନ ଲୋକେ କମ୍ପା ଡରୁ ।
ଯମ ବୋଇଲା ହେ ଦେବ ସାବଧାନେ ଶୁଣ
ଏହିକ୍ଷଣି ଆମ୍ଭ ପ୍ରଭୁ ବିଲଙ୍କା ରାବଣ ।
ବ୍ରହ୍ମା ବର ପାଇ ସେ ଅଟଇ ବଳୀୟାର
ଏକାବେଳେ ଦେଲେ ତାକୁ ସହସ୍ରେକ ଶିର ।
ବ୍ରହ୍ମା ବୋଇଲେ ମୋହର ନାହିଁତ ଆୟତ୍ତ
ସହସ୍ରଶିରା ରାବଣ ଲକ୍ଷେଶିରା ପୁତ୍ର ।
ବଳେ ମହାବଳୀୟାର ଦନୁଜ ଅଟଇ
ସର୍ବ ଦେବତାଙ୍କୁ ନେଇ ପାଦରେ ଖଟାଇ ।
ମୁହିଁ ଯାଇ ବେଦ ପଢ଼େ ପ୍ରଭାତ କାଳରେ
ମଡ଼ିଆଳି ଲୁଗା କାଚେ କୁବେର ତା ଘରେ ।
ବୃହସ୍ପତି ପାଞ୍ଜି ପଢ଼େ ଯମ ବାଡ଼ ଛାଟି
ଅପସରାମାନେ ଥାନ୍ତି ନୃତ୍ୟ ଗୀତେ ଖଟି ।
ନ ଜାଣି କି ସୁନାସୀର ଦୈତ୍ୟ ବଳୀୟାର
ତାହାର ସମାନ ବଳୀ ନାହିଁ ତ୍ରିପୁର ।
ରାବଣକୁ ମାରି ରାମ ଉଶ୍ୱାସିଲେ ଲଙ୍କା
ଏକା ଏ ଦଇତ୍ୟ ପାଇଁ ଲାଗେ ବଡ଼ ଶଙ୍କା ।
ବାସବ ବୋଇଲେ ସେ କେମନ୍ତେ ଯିବ ନାଶ
ରାମଙ୍କୁ ଗୁହାରି ଯାଇ କର ହେ ବିଦଶ ।
ବିଧାତା ବୋଇଲେ ରାମ ଏମନ୍ତେ ନ ମାରେ
ମାୟାରେ ଉପାୟ କଲେ ଅବା ମାରିପାରେ ।
ଉପାୟ କର ହେ ବ୍ରହ୍ମା ବୋଲେ ସୁନାସୀର
ଶ୍ରୀରାମ ନ ମାଇଲେ ନ ମରଇ ଅସୁର ।
ଅଯୋଧ୍ୟାରେ ରାଜା ଯେବେ ରାଘବ ହୋଇବେ
ବିଲଙ୍କାକୁ କାହିଁପାଇଁ ଶ୍ରୀରାମ ଆସିବେ ।
ଯେମନ୍ତ ଆସନ୍ତି ବିଲଙ୍କାକୁ ରାମଚନ୍ଦ୍ର
ରାଜା ହେଲେ ଉପାୟ ତ ନ ପାଇବା ଆଉ ।
ଏହା ଶୁଣି ଦେବପତି ଉପାୟ ରଚିଲେ
ଟେନ ଦୁର୍ବଳକୁ ରାଇ ଏମନ୍ତ ବୋଇଲେ ।
ଏହିକ୍ଷଣି ତୁମ୍ଭେ ବେନି ଅଯୋଧ୍ୟାକୁ ଯିବ
ଯାଇଣ ଜାନକୀଦେବୀ କଣ୍ଠରେ ବସିବ ।

ଯେମନ୍ତେ ରାମଙ୍କୁ ଝିଙ୍ଘାସିବେ ବଇଦେହୀ
ଯେମନ୍ତେ ଆସିବେ ବଲଙ୍କାକୁ ରଘୁସାଇଁ ।
ଦେବକାର୍ଯ୍ୟ କରି ତୁମ୍ଭେ ବେଗେ ଚଳିଯାଅ
ଅଯୋଧ୍ୟା ନଗରେ ଯାଇ ଖଳ ଯେ ଭୁଆଅ ।
ବ୍ରହ୍ମାଙ୍କର ବାକ୍ୟେ ଖଳ ଦୁର୍ବଳ ଯେ ଦୁଇ
ରାମ ଅଭିଷେକ ସ୍ଥାନେ ପ୍ରବେଶିଲେ ଯାଇ ।
ଜାନକୀ ଦେବୀଙ୍କ କଣ୍ଠେ ଖଳ ବିଜେକଲ
ଦୁର୍ବଳ ଯେ ଶ୍ରୀରାମଙ୍କ କଣ୍ଠରେ ବସିଲ ।
ଅଯୋଧ୍ୟା ନଗର ଜନ ମାନଙ୍କୁ ମୋହିଲ
ଦୁନ୍ଦୁଭି ଶବଦ ନାହ୍ନେ ପୃଥ୍ୱୀ ଚମକଲ ।
ବଶିଷ୍ଠ ଯାବାଳି ଯାଜ୍ଞବଲ୍‌କ୍ୟ ବାମଦେବ
ଅଛନ୍ତି ଅଙ୍ଗିରା ଅଷ୍ଟାବକ୍ର ଆଦି ସର୍ବ ।
ରାମର ତ ଜନ୍ମ ଧୀରେ ଭରତ ଶତ୍ରୁଘ୍ନ
ଛତ୍ର ଧରି ଆଗେ ଉଭା ହୋଇଛନ୍ତି ଲକ୍ଷ୍ମଣ ।
ବେଦବାକ୍ୟ ପଢ଼ନ୍ତି ବଶିଷ୍ଠ ବ୍ରହ୍ମଋଷି
ପାତ୍ର ମିତ୍ର ଅମାତ୍ୟେ ଯେ ବେଢ଼ି ବସିଛନ୍ତି ।
ଏସନ ସମୟେ ଦେବୀ ପାର୍ବତୀ ଗୋ ଶୁଣ
ଖଳ ସହୁଁ ମୋହିଲକ ଶ୍ରୀରାମଙ୍କ ମନ ।
ବଶିଷ୍ଠଙ୍କୁ ରହିଁ ବୋଲୁଛନ୍ତି ରଘୁବୀର
ଅନେକ କଷ୍ଟରେ ମୁହିଁ ମାରିଲି ଅସୁର ।
ପର୍ବତ ବୁହାଇ ସିନ୍ଧୁ ମଧ୍ୟେ କଲି ବନ୍ଧ
ଦୁର୍ବାର ସମର କଲି ରଜା ଦଶକନ୍ଧ ।
ଅନେକ କଷ୍ଟରେ ମଲା ରଜା ଲଙ୍କସାଇଁ
ଶୁଣି ଉପହାସ କରି ବୋଲନ୍ତି ବୈଦେହୀ ।
କାର୍ଯ୍ୟ ନ କରଣ କମ୍ପା ପ୍ରଶଂସି ହେଉଛ
କେଉଁଦିନ ରାବଣକୁ ତୁମ୍ଭେ ମାରିଅଛ ।
ତାହା ଶୁଣି ରଘୁନାଥ ହୋଇଲେ ମଉନ
ହନୁକୁ ବୃହିଁଣ ଆଜ୍ଞା ଦେଲେ ରଘୁନାନ ।
ହେ ବାବୁ ଚନ୍ଦନ କାଷ୍ଠ ଆଣ ବେଗେ ଯାଇ
ଯେମନ୍ତ ଏ ଅଭିଷେକ ବେଳା ନ ଗଡ଼ଇ ।
ଶ୍ରୀରାମଙ୍କ ଆଜ୍ଞା ପାଇ ଚଳେ ହନୁବୀର
ଅଯୋଧ୍ୟା ନଗର ମଧ୍ୟୁ ହୋଇଲ ବାହାର ।
ପ୍ରବେଶ ହୋଇଲ ଯାଇ ଚନ୍ଦନ ଗିରିରେ
ଖୋଜଇ ଚନ୍ଦନ ବୃକ୍ଷ ପର୍ବତ ଉପରେ ।
ଏସନ ସମୟେ ଦେବୀ ପାର୍ବତୀ ଗୋ ଶୁଣ
ଖଳ ଯେ ଉଚାଟ କଲ ଜାନକୀଙ୍କ ମନ ।
ଶ୍ରୀରାମ କହନ୍ତି ଦୁଃଖ ବଶିଷ୍ଠ ଆଗରେ
ଅତିକଷ୍ଟେ ଅସୁରଙ୍କୁ ମାରିଲି ଲଙ୍କାରେ ।
ହସିଣ ଜାନକୀ ଦେବୀ ବୋଲନ୍ତି ଏସନ
ରାବଣକୁ ବଧ କଲ କହ କେଉଁଦିନ ।
ଶ୍ରୀରାମ ବୋଇଲେ ସତ୍ୟ ହୋଇଲୁ କି ବାଇ
ଭୁଲିଗଲୁ କି ଅସୁର ଘରେ ଥିଲୁ ରହି ।
ସୁବଳସ୍ୱା ପର୍ବତର ଯେତେକ ବୃତ୍ତାନ୍ତ
ନ ଜାଣୁକି ତହିଁ ଯୁଦ୍ଧ କଲ ଲଙ୍କନାଥ ।
କୁମ୍ଭକର୍ଣ୍ଣ ଆଦି ମହୀରାବଣ ସହିତେ
ମୋର ଶରଘାତେ ରଣେ ପଡ଼ିଲେ ସମସ୍ତେ ।
ରାବଣ ସହିତେ ସବୁ ଦୈତ୍ୟ ମଲେ ରଣେ
ସ୍ୱର୍ଣ୍ଣମୟ ଲଙ୍କାପୁର ଧ୍ୱଂସକଲି ବାଣେ ।
ଜାନକୀ ବୋଇଲେ ପ୍ରଭୁ ପ୍ରତିଜ୍ଞା ନକର
ମୁହିଁ ନ ମାରିଲେ କାହୁଁ ମରନ୍ତା ଅସୁର ।
ତୁମ୍ଭେ କିବା କଷ୍ଟ ପାଇଅଛ ରଘୁରାଣ
ଘୋର କଷ୍ଟ ପାଇଣ ମୁଁ ମାରିଲି ରାବଣ ।
ଏସନ ପ୍ରତିଜ୍ଞା ଯେବେ ଅଛି ରଘୁସାଇଁ
ବଲଙ୍କାର ରାବଣକୁ ବଧକର ଯାଇ ।
ସହସ୍ରକ ଶିର ବହେ ପ୍ରତାପୀ ଅସୁର
ଦଶଶିର ନାଶି କିବା ପ୍ରତିଜ୍ଞା ତୁମ୍ଭର ।
ଦେବତାଏ ଅସୁରର ଆସ୍ଥାନ ତଳରେ
ଦିନ ରାତି ଖଟୁଥିନ୍ତି ଭୃତ୍ୟ ପରକାରେ ।
ବାଡ଼ଦ୍ୱାରେ ଯମରାଜା ଅଛି ଜଗୁଆଳ
କୁବେର ଦେବତା ତାର ଜାତଇ ମହଳ ।
ଦେବକାର୍ଯ୍ୟ ହେବ ଯେବେ ଆହେ ରଘୁସାଇଁ
ବଲଙ୍କା ଦେଶକୁ ଧ୍ୱଂସ କର ବେଗେ ଯାଇଁ ।
ଶ୍ରୀରାମ ବୋଇଲେ ତୁମ୍ଭେ ଥାଅ ଅନ୍ତଃପୁରେ
କେମନ୍ତେ ଜାଣିଲ ଏହା କହ ମୋ ଆଗରେ ।
ଜାନକୀ ବୋଇଲେ ବାପଘରେ ଥିବା କାଳେ
ଏକଋଷି ଆସି ଚାତୁର୍ମାସ୍ୟା ବ୍ରତକଲେ ।
ପିତାଙ୍କ ଆଜ୍ଞାରେ ତାଙ୍କ ସେବାକଲି ମୁହିଁ
ସନ୍ତୋଷ ହୋଇଣ ମୁନି ମୋତେ ଥିଲେ କହି
ତାଙ୍କ ମୁଖୁଁ ଶୁଣିଥିଲି ରାବଣ ବୃତ୍ତାନ୍ତ
ତାହାଙ୍କୁ ମାରିଲେ ବୀରପଣ ହେବ ଖ୍ୟାତ ।
ଖଳ ଯେଣୁ ମୋହିଅଛି ଜାନକୀଙ୍କ ମନ
ଅନେକ ଝିଙ୍ଘାସି ତାଙ୍କୁ ବୋଇଲେ ବଚନ ।

ଶୁଣି କ୍ରୋଧେ ଥରହର ହେଲେ ରଘୁବୀର
କହ ସତ କେଉଁଠାରେ ବିଲଙ୍କା ନଗର ।
ଏକାକେ ସେ ଦଇତ୍ୟଙ୍କୁ କରିବି ସଂହାର
ଦେବଙ୍କ ବଇରୀ ଯେହୁ ବଇରୀ ମୋହର ।
ପ୍ରତିଜ୍ଞା କରୁଛି ତୁମ୍ଭ ଆଗେ ବଇଦେହୀ
ବିଲଙ୍କା ନଗରେ ବୁଲାଇବି ଲୁହାନହୀ ।
ଜାନକୀ ବୋଇଲେ ଲଙ୍କାଠାରୁ ଶତେଯୁଣ
ଅଛଇ ସହସ୍ରଶିରା ନାମେଣ ରାବଣ ।
ସପ୍ତଶିରା ମନ୍ତ୍ରୀ ତାର ତ୍ରିଶିରା ସେ ଭାଇ
ଶତଶିରା ପୁତ୍ର ତାର ବଳିଷ୍ଠ ଅଟଇ ।
ଶୁଣିଣ ଶ୍ରୀରାମ ସେ ହୋଇଲେ କମ୍ପମାନ
ଉଠିଲେ କୋଦଣ୍ଡ ଘେନ ପ୍ରଭୁ ରଘୁନାନ ।
ଅଯୋଧ୍ୟାର ଲୋକେ ଶୁଣି କଲେ ହାହାକାର
କେ ବୋଲଇ ବିଲଙ୍କାକୁ ଯିବେ ରଘୁବୀର ।
କେ ବୋଲେ ଏହି କଥାକୁ କେ କଲା ଉଆଣ
କେ ବୋଲେ ଉଆଇଛନ୍ତି ସୀତା ଦେବୀ ପୁଣ
ଖଳ ଯେଣୁ ସମସ୍ତଙ୍କ ମନ ଅଛି ମୋହି
କାହାର ମୁଖରୁ ଯେ ସମସ୍ୟା ନ ଆସଇ ।
ସ୍ତମ୍ଭୀଭୂତ ହୋଇଛନ୍ତି ସକଳ ସଇନ୍ୟ
ମାତାମାନେ ଶୁଣି ପୁଣି ହୋଇଲେ ମଉନ ।
ବଶିଷ୍ଠଙ୍କୁ ଓଳଗିଣ ପ୍ରଭୁ ଚକ୍ରଧର
ବୋଇଲେ ବିଲଙ୍କା ଯିବି ଆହେ ମୁନିବର ।
କିଛି ନ କହିଣ ମୁନି ହୋଇଲେ ମଉନ
କରଯୋଡ଼ି ଶ୍ରୀରାମଙ୍କୁ କହିଲେ ଲକ୍ଷ୍ମଣ ।
ଏକାକେ କମ୍ପାଇ ଯିବ ଆହେ ଚକ୍ରଧର
ମୁହିଁ ସଙ୍ଗେ ଯିବି ବୋଲି ହୋଇଲେ ବାହାର
ଶ୍ରୀରାମ ବୋଇଲେ ବାବୁ ଥାଅ ଅଯୋଧରେ
କେତେକଷ୍ଟ ପାଇବୁ ତୁ ମୋହର ସଙ୍ଗରେ ।
ଭରତ ବୋଇଲା ଦେବ ଯିବି ଦଣ୍ଡଘେନ
ଅଯୋଧ୍ୟା ସମ୍ଭାଳ ଏହା କହି ରଘୁମଣି ।
ମାତାମାନଙ୍କୁ ପ୍ରଣମି ହୋଇଲେ ବାହାର
ଜାନକୀଙ୍କ ମୁଖ ଚାହିଁ ପ୍ରଭୁ ରଘୁବୀର ।
ବୋଇଲେ ଗୋ ସତୀ ମାତା ପାଦେ ଖଟୁଥିବୁ
କାହାର ସଙ୍ଗରେ କଳି ଦ୍ୱନ୍ଦ୍ୱ ନ କରିବୁ ।
ସର୍ବ ମଙ୍ଗଳା ସୁମରି ଶ୍ରୀ ରଘୁନନ୍ଦନ
ରଥ ଗଜ ତେଜି ପାଦେ କରନ୍ତି ଗମନ ।

ତହୁଁ ସିଂହଦ୍ୱାରେ ଯାଇଁ ହେଲେ ରଘୁମଣି
ଦେବତାଏ ସ୍ୱର୍ଗପୁରେ କଲେ ଶଙ୍ଖଧ୍ୱନି ।
ସ୍ୱର୍ଗେଥାଇ ପୁଷ୍ପବୃଷ୍ଟି କଲେ ସୁନାସୀର
ସେ ସମୟେ ବେଦଧ୍ୱନି କଲେ ବେଦବର ।
ବୃହସ୍ପତି ଅନୁକୂଳ ବେଳ ଜଣାଇଲେ
କରଯୋଡ଼ି ଦେବଗଣ ସ୍ତୁତି ଆରମ୍ଭିଲେ ।
ଆକାଶୁ ମଙ୍ଗଳଧ୍ୱନି ଶୁଭେ ଘନ ଘନ
ପୃଥିବୀ ଉଶ୍ୱାସ ଆଜି କରିବେ ଶ୍ରୀରାମ ।
ପବନକୁ ଚାହିଁ ଆଜ୍ଞା ଦେଲେ ବେଦବର
ଦେବତାମାନଙ୍କ କାର୍ଯ୍ୟ କର ହେ ସମୀର ।
କେତେକ୍ଷଣେ ବିଲଙ୍କାକୁ ଯିବେ ରଘୁସାଇଁ
ଗଗନ ମାର୍ଗରେ ନିଅ ତାହାଙ୍କୁ ଉଡ଼ାଇ ।
ବ୍ରହ୍ମାଙ୍କ ବଚନେ ଯେ ସମୀର ଚଳିଗଲା
ଅଣଗୃଣ ମୂର୍ତ୍ତି ଏକ ହୋଇଣ ବହିଲା ।
ସଧୀରେ ସଧୀରେ ତହୁଁ ବହିଲା ସମୀର
ଧୀରେ ଧୀରେ ଚଳିଗଲେ ସେ କୋଦଣ୍ଡଧର
ଗଗନ ମାର୍ଗରେ ନିଏ ପବନ ଉଡ଼ାଇ
ଘେନେ ଗଗନରେ ଚଳିଯାନ୍ତି ରଘୁସାଇଁ ।
କହୁଁ କହୁଁ ରାମଚନ୍ଦ୍ର ଶୂନ୍ୟମାର୍ଗେ ଗଲେ
ବିଲଙ୍କାରେ ତାଙ୍କୁ ନେଇ ପବନ ଛାଡ଼ିଲେ ।
ପ୍ରଚଣ୍ଡ ନାମରେ ଅଛି ଏକଇ ପର୍ବତ
ସେ ଗିରି ଉପରେ ମିଳିଲେ ଯେ ରଘୁନାଥ ।
ଦକ୍ଷିଣ ଦିଗକୁ ଦୃଷ୍ଟି କଲେ ରଘୁରାଣ
ବିଲଙ୍କା ନଗର ସବୁ ଦିଶଇ ସୁବର୍ଣ୍ଣ ।
ତାହାର ପାଚେରୀ ଉଚ୍ଚ ଅଟେ ନବତାଳ
ଏକବିଂଶ ତାଳ ଉଚ୍ଚ ଜଗତୀର ଚୂଳ ।
ଦ୍ୱିଲକ୍ଷ ଯୋଜନ ଅଟେ ତାର ଆୟତନ
ଚୂରିକତି ବିରାଜୁଛି ରଜତ ସୁବର୍ଣ୍ଣ ।
ବିହରନ୍ତି ରାକ୍ଷସେ ଯେ ଶସ୍ତ୍ରମାନ ଧରି
ପର୍ବତ ସମାନ ଦିଶୁଛନ୍ତି ଦୁରାଚାରୀ ।
ଚାରିଦିଗେ ଶୋଭାପାଏ ଚାରି ସିଂହଦ୍ୱାର
ଜଗିଛନ୍ତି ଚାରି ଚାରି ସହସ୍ର ଅସୁର ।
ଅତି ମନୋହର ଦିଶେ ବିଲଙ୍କା ଭୁବନ
ଦେଖିଣ ପ୍ରଶଂସା କଲେ ପ୍ରଭୁ ରଘୁନାନ ।
ଧନ୍ୟରେ ବିଲଙ୍କା ରାଜା ଧନ୍ୟରେ ତୋ ପୁରୀ
ଅକାରଣେ ହେଲୁ କମ୍ପା ଦେବଙ୍କ ବଇରୀ ।

ତୋତେ ମାଇଲେଟି ମୋର ପ୍ରତିଜ୍ଞା ରହିବ
ପୃଥିବୀର ଭାରଭର ଉଶ୍ୱାସ ହୋଇବ ।
ଏତେବୋଲି କୋପଭରେ କୋଦଣ୍ଡ ଧାରଣ
ପାଦୁକା ମନ୍ତ୍ରକୁ ଦେବ କଲେ ସୁମରଣ ।
ତତ୍‌କ୍ଷଣେ ଉତ୍ତର ଦ୍ୱାରେ ମିଳିଲେକ ଯାଇଁ
ଦ୍ୱାରଦେଶେ ଆବୋରିଣ ଦୈତ୍ୟଛନ୍ତି ରହି ।
ଧନୁର୍ଦ୍ଦଣ୍ଡେ ଗୁଣ ଦେଇ ଯୋଚି ପଞ୍ଚବାଣ
ଓଷ୍ଠାରଣ ଛାଡ଼ିଦେଲେ ପ୍ରଭୁ ରଘୁରାଣ ।
ଦୁଇ ସହସ୍ର ନିଶାଚର ଦ୍ୱାରେ ବସିଥିଲେ
ବେନିଖଣ୍ଡ କରି ତାଙ୍କୁ କାଟି ପକାଇଲେ ।
ଭିତରେ ପଶିଲେ ପ୍ରଭୁ ରଘୁକୁଳ ସାଇଁ
ସୁବର୍ଣ୍ଣ ପାଚେରୀ ପରେ ଉଠିଲେକ ଯାଇଁ ।
ଦେଖିଲେ ଆସ୍ଥାନ ପରେ ବସିଛି ଅସୁର
ମଣିମା ମଣିମା ଡାକ ଶୁଭେ ମହାଘୋର ।
ଦେବତାଏ ଖଟିଛନ୍ତି ଯାଙ୍କର ସମ ନ
ଦେବତାଙ୍କ କଷ୍ଟ ଦେଖି ଶ୍ରୀରଘୁନନ୍ଦନ ।
କ୍ରୋଧଭରେ ବାରମ୍ବାର ଟଙ୍କାରିଲେ ଧନୁ
ପ୍ରଜ୍ୱଳିତ ଅଗ୍ନି ତୁଲ୍ୟ ଦିଶେ ତାଙ୍କ ତନୁ ।
ଧନୁର ଟଙ୍କାର ଶବ୍ଦେ କମ୍ପେ ତିନିପୁର
ଶୁଣିଣ ବଳଙ୍କା ପୁର ହେଲା ଥରହର ।
ରେ ରେ କାରି ଧ୍ୱନିକରି ଡାକିଲେ ଶ୍ରୀରାମ
ଆରେରେ ପାପିଷ୍ଠ ଦୈତ୍ୟ ବଳଙ୍କା ରାଜନ ।
ପାରିଲେ ତୁ ଧନୁ ଧରି କର ରେ ସମର
ଅକଣ୍ଟକ ରାଜ୍ୟ ଭୋଗ କରୁ ରେ ପାମର ।
ଦେବତାମାନଙ୍କୁ କମା ବାନ୍ଧିଲୁ ପାଦରେ
ସବଂଶରେ ପଠାଇବି ତୋତେ ଯମପୁରେ ।
ମୁହିଁ ଅଟେ ଦଶରଥ ରାଜାଙ୍କ ନନ୍ଦନ
ପରଶୁରାମଙ୍କ ଦର୍ପ କରିଛି ଗଞ୍ଜନ ।
ବାଳି ମାରି ସୁଗ୍ରୀବକୁ ଦେଲି ରାଜ୍ୟଭାର
ରାବଣକୁ ମାରି ଧ୍ୱଂସ କଲି ଲଙ୍କାପୁର ।
ତୋତେ ମାରିବାକୁ ମୋର ବଳିଅଛି ମତି
ସହସ୍ରେ ଶିରକୁ ମାରି ରଖିବି କୀରତି ।
ଏହା ଶୁଣି ସଭାଲୋକେ ହେଲେ ଚମତ୍କାର
ଦ୍ୱିସହସ୍ର ନୟନରେ ଚାହିଁଲା ଅସୁର ।
ମନ୍ତ୍ରୀକି ପୁଚ୍ଛିଲା କହ କି କହୁଛି ସେହି
ସ୍ୱର ଜଣାଇଲା ଯୁଦ୍ଧ ମାଗୁଛି ଗୋସାଇଁ ।
ଶୁଣି ଉପହାସ କଲା ପ୍ରତାପୀ ଅସୁର
ବୋଇଲା ମୋ ସଙ୍ଗେ ଏହି କରିବ ସମର ।
ଏତେ ବୋଲି କରତାଳି ଦେଲା ଲଙ୍କସାଇଁ
କରତାଳି ବାତ ଘାତ ଶ୍ରୀରାମେ ଲାଗଇ ।
କରତାଳି ବାତରେ କି ଆକାଶ ଭାଙ୍ଗିଲା
ସମ୍ଭାଳି ନ ପାରିଲେ ତା କୌଶଲ୍ୟାର ବଳା ।
ଉଡ଼ିଲେ ଗଗନମାର୍ଗେ ସେ ରଘୁନନ୍ଦନ
କହୁଁ କହୁଁ ଉଡ଼ିଗଲେ ସତୁରି ଯୋଜନ ।
ଉଡ଼ି ଉଡ଼ି ଶ୍ରୀରାମ ଯେ ପଡ଼ିଲେ ଭୂମିରେ
ଚେତନା ପାଇଲେ ପୁଣି କିଛିକ୍ଷଣ ପରେ ।
ଉଠିଣ ଶ୍ରୀରାମଚନ୍ଦ୍ର ହୋଇଲେ ମଉନ
କେଡ଼େ ବଡ଼ କର୍ମ କଲା ବଳଙ୍କା ରାଜନ ।
କୋଦଣ୍ଡ ପକାଇ ଦେଲେ କପାଳରେ କର
ଆପଣାକୁ ନିନ୍ଦାକଲେ ରଘୁକୁଳ ବୀର ।
ଧିକ ମୋର ରାମ ନାମ ଧିକ ପରାକ୍ରମ
କିମ୍ପାଇଁ ମୁଁ ମର୍ତ୍ତ୍ୟପୁରେ ହୋଇଲି ଜନମ ।
କେମନ୍ତେ ଏ ନାଶ ଯିବ ଦୁର୍ବାର ଦଇତ୍ୟ
ଏତେ ବୋଲି ଯୋଗାସନେ ବସି ରଘୁନାଥ ।
ଘୋର ତପସ୍ୟାରେ ମଗ୍ନ ହେଲେ ରୂପଧାରୀ
ଏହାଦେଖି କମ୍ପମାନ ହେଲା ସ୍ୱର୍ଗପୁରୀ ।
ଏଥୁ ଅନନ୍ତରେ ଶୁଣ ଆଗୋ ହୈମବତୀ
ଏ ଗ୍ରନ୍ଥ ଶୁଣିଲେ ନିଶ୍ଚେ ହୋଇବ ମୁକତି ।
ଏକମନେ ଯେଉଁ ପ୍ରାଣୀ ଏହାକୁ ଶୁଣଇ
ପାତକ ବିନାଶ ହୁଏ ସ୍ୱର୍ଗେ ବସେ ଯେହି ।
ଅନ୍ଧ ଚକ୍ଷୁଦାନ ପାଏ ଶୁଣି ଏ ପୁରାଣ
ଦରିଦ୍ର ଶୁଣିଲେ ହାଦେ ଲଭେ ବହୁଧନ ।
ରାମାୟଣ ଗ୍ରନ୍ଥ ଏହି ରସ ମଧ୍ୟେ ସାର
ଏକଲକ୍ଷେ ଶୁଣିଲେ ଯେ ହୋଇବ ନିସ୍ତାର ।
ଶ୍ରୀ ହିଙ୍ଗୁଳାଙ୍କ ଆଜ୍ଞାରେ କରଇ ଲିଖନ
ଦୋଷ ମୋର ନ ଧରିବ ହେ ପଣ୍ଡିତଜନ ।
ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖଇ
ମୂର୍ଖ ଅପଣ୍ଡିତ ମୁହିଁ ଜ୍ଞାନ ମୋର ନାହିଁ ।
ଶ୍ରୀରାମ ଚରିତ ଏ ଅପୂର୍ବ ଗ୍ରନ୍ଥ ସାର
ଶ୍ରୀରାମ ସୁମରି ନରେ ଭବୁଁ ହୁଅ ପାର ।
ଶ୍ରୀରାମଙ୍କ ନାମଗୋଟି ନିରନ୍ତରେ ଘୋଷ
ସେ ରାମେ ଶରଣ ନିତ୍ୟେ ଏ ଶାରଳା ଦାସ ।

## ହନୁର ବିଲଙ୍କା ଆଗମନ ଓ ବିଷପାନରେ ମୃତ୍ୟୁ ପବନଦ୍ୱାରା ପୁନର୍ଜୀବନ ପ୍ରାପ୍ତି

ଏଥୁ ଅନନ୍ତରେ ଦେବୀ ପାର୍ବତୀ ଉଠିଲେ
ଶୂଳପାଣିଙ୍କର ବେନି ଚରଣ ଧଇଲେ ।
ବୋଇଲେ ମୃକଣ୍ଡ ମୋତେ କର ସୁରଗଣ
ବୁଝାଇ କହନ୍ତୁ ମୋତେ ଏହି ରାମାୟଣ ।
ଘୋର ତପ ଆରମ୍ଭି ବସିଲେ ରଘୁନାଥ
ତଦନ୍ତେ କି ହେଲା କହ ଆହେ ପ୍ରାଣନାଥ ।
କହନ୍ତି ଈଶ୍ୱର ଶୁଣ ଦେବୀ ଗୋ ପାର୍ବତୀ
ଘୋର ତପେ ମଗ୍ନ ହେଲେ ପ୍ରଭୁ ରଘୁପତି ।
ଏମନ୍ତ ସମୟେ ଶୁଣ ଅଯୋଧ୍ୟା ବୃତ୍ତାନ୍ତ
କାଠ ଆଣି ଯାଇଥିଲେ ବୀର ହନୁମନ୍ତ ।
ସେକ୍ଷଣ ଚନ୍ଦନ କାଠ ପବନର ବଳା
ଜାନକୀ ଚରଣ ତଳେ ଓଳଗି ହୋଇଲା ।
କରଯୋଡ଼ି ପଚ୍ଚରଇ ଅଞ୍ଜନାର ସୁତ
କେଉଁ ସ୍ଥାନରେ ବିଜେ ଦେବ ରଘୁନାଥ ।
ଜାନକୀ ବୋଲନ୍ତି ଶୁଣ ଆରେ ହନୁମାନ
ବିଲଙ୍କାକୁ ବିଜେ କଲେ ଶ୍ରୀ ରଘୁନନ୍ଦନ ।
ଲକ୍ଷେଶିବ ପୁଣି ସଙ୍ଗେ ନବିବେ ସତ୍ୱର
ଏକା ଯାଇଛନ୍ତି କରେ ଧରି ଧନୁଶର ।
ଶୁଣି ସନ୍ତାପିତ ହେଲା ପବନର ସୁତ
ବିଲଙ୍କା ଯିବାକୁ ସଜ ହେଲା ହନୁମନ୍ତ ।
ଅଯୋଧ୍ୟା ନଗର ମଧ୍ୟୁ ହୋଇଲା ବାହାର
ଗଗନମାର୍ଗରେ ବିଜେ କଲା ହନୁବୀର ।
ଦକ୍ଷିଣ ମୂରତି ହୋଇ ଚଳେ ହନୁମାନ
ଚିତ୍ରକୂଟ ପର୍ବତରେ ମିଳିଲା ବହନ ।
ଫଳ ମୂଳ କଛୁ ତହିଁ କରିଣ ଆହାର
ସେ ଦିନ ରହିଲା ସୁଖେ ପବନ କୁମର ।
ଦକ୍ଷିଣ ମୂରତି ହୋଇ ତହୁଁ ପୁଣି ଗଲା
ସ୍ୱର୍ଣ୍ଣମୟ ଲଙ୍କାପୁର ସୀମାରେ ମିଳିଲା ।
ନଗରଲୋକମାନେ ଦେଖି କାତର ହୋଇଲେ
ବିଭୀଷଣ ଆଗେ ଯାଇ ତ୍ୱରିତେ ଜଣାଇଲେ ।
ହେ ଦେବ ଶୁଣିମା ହେଉ ବୀର ଲଙ୍କେଶ୍ୱର
ହନୁମନ୍ତ ଆସି ପ୍ରବେଶିଲା ଲଙ୍କାପୁର ।
ଶୁଣି ବିଭୀଷଣ ମନେ ହେଲା ଚମତ୍କୃତ
କି ନିମନ୍ତେ ଆସିଅଛି ବୀର ହନୁମାନ ।
କିଅବା ସନ୍ଦେଶ ଦେଇଛନ୍ତି ରଘୁବୀର
କରଯୋଡ଼ି ପଚ୍ଚରିଲା ଲଙ୍କାର ଠାକୁର ।
ଅଯୋଧ୍ୟା ନଗର ଅବା ନ ପାଇଲେ ରାମ
କି ଅବା ପଥରେ କରି ଅଛନ୍ତି ବିଶ୍ରାମ ।
ଏଥୁ ନେବାକୁ କି ଅବା ପେଷିଛନ୍ତି ତୋତେ
ସଂକ୍ଷେପେ କହିଲେ ହନୁ ଯିବଇଁ ପରତେ ।
କହେ ହନୁମନ୍ତ ଶୁଣ ଆହେ ବିଭୀଷଣ
ବିଲଙ୍କା ଦେଶକୁ ବିଜେ କରିଛନ୍ତି ରାମ ।
ଏକା ଗଲେ ଶ୍ରୀରାମଙ୍କ ସଙ୍ଗେ କେହି ନାହିଁ
ସେ କାରଣୁ ବିଲଙ୍କାକୁ ଯାଉଅଛି ମୁହିଁ ।
ଏହା ଶୁଣି ବିଭୀଷଣ ବିକଳ ହୋଇଲା
ଏକାକୀ କିମ୍ପାଇଁ ଗଲେ କୌଶଲ୍ୟାଙ୍କ ବଳା ।
ଦଣ୍ଡବଳ ସେନ କି ମୁଁ ଯିବି ହନୁମାନ
ରଜାସଙ୍ଗେ ଯୁଝିବେକି ସେ ରଘୁନନ୍ଦନ ।
ଶୁଣି ହନୁମାନ ବୋଲେ ଶ୍ରୀରାମ ବୋଇଲେ
ବାରତା ପାଇଲେ ସୈନ୍ୟ ସେନ ଯିବ ଭଲେ
ଆଗେ ମୁହିଁ ଯାଇ କରେ ଶ୍ରୀରାମଙ୍କୁ ଠାବ
ବେଗେ ଯାଉଅଛି ରାଜା ବିଳମ୍ବ ହୋଇବ ।
ଏହା ଶୁଣି ବିଭୀଷଣ ଭିତରେ ପଶିଲା
ସ୍ୱାଦୁ ପକ୍ୱଫଳ ଆଣି ଖାଇବାକୁ ଦେଲା ।
ଭୁଞ୍ଜିଣ ସନ୍ତୋଷ ହୋଇ ପବନ ନନ୍ଦନ
ଲଙ୍କାରୁ ବାହାର ହେଲା ବୀର ହନୁମାନ ।
ଦକ୍ଷିଣ ମୂରତି ହୋଇ ତହୁଁ ଚଳିଗଲା
ଲଙ୍କାପୁର ମଧ୍ୟୁ ବୀର ବାହାର ହୋଇଲା ।
ଗଗନ ମାର୍ଗରେ ଯାଏ ବୀର ହନୁମାନ
ବାଟରେ ସହାୟ ତାଙ୍କୁ ହୋଇଲେ ପବନ ।
ପ୍ରଚଣ୍ଡ ପର୍ବତ ପରେ ମିଳିଲା ବହନ
ବିଲଙ୍କାକୁ ଦୃଷ୍ଟି ଦେଲା ପବନ ନନ୍ଦନ ।
ଦେଖିଲା ଜଗତୀ ମେଢ଼ ମଣ୍ଡପ ଆସ୍ଥାନ
ଲଙ୍କାପୁରଠାରୁ ସେ ସୁନ୍ଦର ଦୁଇଗୁଣ ।
ମହାବଳୀ ଅତି ଦୀର୍ଘ ଦିଶନ୍ତି ଅସୁର
ଭୂମିପରେ ପାଦ ଥାଏ ଆକାଶରେ ଶିର ।
ଅତିଅନ୍ତ ଭୟଙ୍କର ଅସୁରେ ଦିଶନ୍ତି
ରାଜାଙ୍କୁ ଅମାତ୍ୟମାନେ ଦର୍ଶନ କରନ୍ତି ।

ଦେଖି ହନୁମନ୍ତ ମୁଖୁ ନ ସ୍ଫୁରେ ବଚନ
କାହିଁ ବିଜେ କରିଛନ୍ତି କମଳଲୋଚନ ।
କେମନ୍ତେ ତାହାଙ୍କୁ ଆଜ କରିବି ମୁଁ ଠାବ
ମେରୁଗିରି ଭୁଲି ଦିଶୁଅଛନ୍ତି ଦାନବ ।
ଏତେ ବୋଲି ହନୁମନ୍ତ ବସି ବିଚାରଇ
ରାତ୍ରହେଲେ ବିଲଙ୍କାରେ ପଶିବଇଁ ମୁହିଁ ।
ଫଳମୂଳ ଭୁଞ୍ଜିଣ ରହିଲା ହନୁମାନ
ରାମ ରାମ ବୋଲି କରେ ମନେ ସୁମରଣ ।
ଦିବସ ଯାଇଣ ରାତ୍ରି ପ୍ରବେଶ ହୋଇଲା
ନଗର ଭିତରେ ପଶି ରାମଙ୍କୁ ଖୋଜିଲା ।
ଘରେ ଘରେ ନ ଛାଡ଼ଇ ଖୋଜେ ହନୁମାନ
କାହିଁ ବା ମର୍କଟ ରୂପ କାହିଁ ହୁଏ ଶ୍ୱାନ ।



( ହନୁମାନ ବିଲଙ୍କାରେ ରାମଙ୍କୁ ଖୋଜିବା )

କାହିଁ ବା ମାର୍ଜାର କାହିଁ ମୂଷାରୂପ ହୋଇ
କାହିଁ ବା ଭ୍ରମର ରୂପେ ଭିତରେ ପଶଇ ।
ସବୁ ପୁରେ ପଶି ଖୋଜେ ପବନ କୁମର
ହାଟ ବାଟ ଦାଣ୍ଡେ ଖୋଜେ ପଶି ଘର ଘର ।
କହେ ଯେ ବିକଳ ହନୁ ବୁଲିଣ ଖୋଜଇ
ଶ୍ରୀରାମଙ୍କୁ ନ ପାଇଣ ମନରେ ଭାଳଇ ।

ରାତ୍ରି ଅର୍ଦ୍ଧେ ହନୁମାନ ପଶିଲା ଭିତର
ମନ୍ତ୍ରୀର ନବରେ ପଶି ଖୋଜେ ହନୁବୀର ।
ବିଶିରା ପୁରରେ ପଶି ରାମଙ୍କୁ ଖୋଜଇ
ତହୁଁ ଯାଇଁ ନୃପତିର ମନ୍ଦିରେ ମିଳଇ ।
ଦେଖିଲା ପଲଙ୍କେ ଶୋଇଅଛି ସେ ଅସୁର
ଦ୍ୱିସହସ୍ର ନେତ୍ର ତାର ଦ୍ୱିସହସ୍ର କର ।
ଲକ୍ଷେ ବିଳାସିନୀ ବସି ଚାମର ଢାଳନ୍ତି
ଲକ୍ଷେ ପରିବାରି ଦୈତ୍ୟ ପାଦ ମଞ୍ଜାଳନ୍ତି ।
ତାମ୍ବୁଳ ଯୋଗାନ୍ତି ଆଣି ଲକ୍ଷେ ପରିବାରି
ଅପ୍ରଶିରା ମନ୍ତ୍ରୀ ଅଛି ସନ୍ନିଧେ ତାହାର ।
ଶ୍ରୀରାମଙ୍କ କଥା ରାଜା ବିଚାରେ ମନରେ
ମନ୍ତ୍ରୀକି ଚାହିଁଣ ରାଜା ଏମନ୍ତ ପଚାରେ ।
କହ ମନ୍ତ୍ରୀ ରାମ ଅଟେ କାହାର କୁମର
କେବଣ ଦେଶରେ ଅବା ଅଟେ ତାର ଘର ।
ସେ ମୋହର କଟକରେ କମ୍ପାଇଁ ପଶିଲା
ଏକାଦିନେ ଆସିଥିଲା ପୁଣି ନ ଆସିଲା ।
ପୂର୍ବେ ମୁଁ ଡଗର ମୁଖୁ ବାର୍ତ୍ତା ଜାଣିଥିଲି
ଲଙ୍କା ଗଡ଼ ଧ୍ୱଂସିଲାର କଥା ପାଇଥିଲି ।
ରାମ ଭାରିଯାକୁ ହରି ଆଣିଲା ରାବଣ
ତେଣୁକରି ଲଙ୍କା ଧ୍ୱଂସ କଲା ରଘୁରାଣ ।
କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ରାବଣକୁ ମାରି
ବନ୍ଦୀରୁ ତାହାର ଭାରିଯାକୁ ନେଲା ତାରି ।
ରାବଣ କନିଷ୍ଠ ଭାଇ ନାମ ବିଭୀଷଣ
ସେ ଯାଇ ରାମଙ୍କ ପାଦେ ପଶିଲା ଶରଣ ।
ତାହାକୁ ଲଙ୍କାରେ ରାମ ରାଜା କରାଇଲେ
ଭାରିଯାକୁ ସଙ୍ଗେ ଘେନି ଅଯୋଧ୍ୟାକୁ ଗଲେ ।
ଏବେ ମୋ କଟକେ ସେହି ପଶିଲା କମ୍ପାଇଁ
ମୁହିଁତ ତାହାର କିଛି ଦୋଷ କରିନାହିଁ ।
ଏହା ଶୁଣି ମନ୍ତ୍ରୀ ବୋଲେ ଶୁଣ ଦଣ୍ଡଧାରୀ
ସ୍ୱୟଂବିଷ୍ଣୁ ରାମ ନର ରୂପେ ଅବତରି ।
ମହୀରେ ବହୁତ ଯଶ ଅର୍ଜିଲାଣି ସେହି
ଦଶରଥ ସୁତ ସେହି ଅଯୋଧ୍ୟାର ସାଇଁ ।
କୌଶଲ୍ୟା ରାଣୀଙ୍କ ଗର୍ଭେ ଜନମ ଲଭିଲା
ବୀର ପର୍ଶୁରାମ ଦର୍ପ ହେଲେଣ ଗଞ୍ଜିଲା ।
ଶିବଧନୁ ଭାଙ୍ଗି ବିଭା ହେଲା ବଇଦେହୀ
ବାଳିକି ମାରିଣ ସୁଗ୍ରୀବକୁ ରାଜ୍ୟ ଦେଇ ।

ରାବଣକୁ ମାରି ରାଜା କଲ ବିଭୀଷଣ
ଏବେ ବିଲଙ୍କାକୁ ଧାଡ଼ି ଦେଲ ରଘୁରାଣ ।
ନଷ୍ଟପ୍ରୁ ସେ ଆସି ପୁଣି କରିବ ସମର
ଅବଶ୍ୟ ଏହି ନଗ୍ର ଉଜାଡ଼ିବ ରଘୁବୀର ।
ଏବେ ମୋର ବୋଲ କର ଆହେ ନୃପସାଇଁ
ରାମଙ୍କୁ ଇତର ପ୍ରାପ୍ତ ନ ମଣ ଗୋସାଇଁ ।
ମାନବ ବସ୍ତୁ ସେ ମଞ୍ଚପୁରେ ଜନ୍ମ ହୋଇ
ଅସୁରଙ୍କୁ ମାରିବାକୁ ଦେହ ଅଛୁ ବହି ।
ଯହିଁ ସେ ଅସୁର ଦେଖେ କରଇ ବିନାଶ
ଦୁଷ୍ଟମାରି ମହୀଭାର କରିବ ଉଶ୍ୱାସ ।
ମୋର ବୋଲ କର ଏବେ ବିଲଙ୍କା ରାଜନ
ଶ୍ରୀରାମ ଅଇଲେ ପାଦେ ପଶିବା ଶରଣ ।
ଶ୍ରୀରାମଙ୍କ ସଙ୍ଗତରେ ଆରମ୍ଭିଣ ପ୍ରୀତି
ଅକଣ୍ଟକ ରାଜ୍ୟ ଭୋଗ କର ଲଙ୍କାପତି ।
ମନ୍ତ୍ରୀର ବଚନ ଶୁଣି ହସିଲ ଅସୁର
ବୋଇଲକ ସେ ରାମକୁ କମ୍ପା ମୋର ଡର ।
ମୋତେ ପୁଣି ମାରିବାକୁ ରାମ କି ଭାଜନ
ଇତର ପରାୟେ ମୋତେ ମଣ ମନ୍ତ୍ରୀଗଣ ।
ମୋତେ ଦେଖି ଶଙ୍କା କରେ ସ୍ୱର୍ଗେ ସୁନାସୀର
ଦେବତାମାନଙ୍କୁ ଆଣି ବାନ୍ଧଣ ପାଦର ।
ଯମ ନନ୍ତ ବାଡ଼ି ଭାଟି ମୋହର ଖଟଇ
କୁବେର ଦେବତା ମୋର ମହଲ କାଟଇ ।
ନିମିଷକେ ବୁଲଇ ମୁଁ ଚଉଦ ବ୍ରହ୍ମାଣ୍ଡ
ତର୍ପଣ କରଇ ନନ୍ତ ସିନ୍ଧୁ ସାତଖଣ୍ଡ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ତ୍ରି ପୁର ସାଧିଲି
ଅକଣ୍ଟକ ବିଲଙ୍କାରେ ସୁଖ ଭୋଗ କଲି ।
ମୁଁ କମ୍ପାଇଁ ରାମପାଦେ ପଶିବି ଶରଣ
ଏପୁରକୁ ଅଇଲେ କି ବର୍ତ୍ତିବ ଶ୍ରୀରାମ ।
ଏହା ଶୁଣି ମନ୍ତ୍ରୀବର ହୋଇଲା ମଉନ
ମନେ ବିଗୃରିଲା ନିଷ୍ଟେ ମରିବ ରାଜନ ।
ଗୁପତରେ ଶୁଣୁଥିଲ ବୀର ହନୁମାନ
ଜାଣିଲା ଏଥିକୁ ଆସିଅଛନ୍ତି ଶ୍ରୀରାମ ।
ତେଣୁ ମନ୍ତ୍ରୀ ଚିତ୍ତେ ହୋଇଲାଣି ବଡ଼ ଖିନ୍ନ
ଏବେ ତ ନଷ୍ଟପ୍ରୁ ବଧ ହେବ ଲଙ୍କପତି ।
ଅବଶ୍ୟ ଭେଟିବି ଏଥେ ଶ୍ରୀରାମଙ୍କୁ ମୁହିଁ
ରାକ୍ଷସ ପୁରରୁ ବୀର ବାହାର ହୁଅଇ ।

ବିଲଙ୍କା ଭିତରେ ପଶି ପୁଣି ହନୁମାନ
କଳନା କରଇ କେତେ ଅଛଇ ସଇନ୍ୟ ।
ଆଠକୋଟି ସାତଲକ୍ଷ ଚର ଅଛୁ ତହିଁ
ଦେଉଳ ମଣ୍ଡପ କେତେ ତାର ସଂଖ୍ୟା ନାହିଁ ।
ସପତ ସହସ୍ର ବାଟ ପାଞ୍ଚସହସ୍ର କନ୍ଧ
ପଦାତି ହଜାର ପଦ୍ମ ମହା ମହା ଯୋଦ୍ଧି ।
ସାତସହସ୍ର ଗଜବାଜୀ ପଞ୍ଚାଶ ଅଯୁତ
ପାଞ୍ଚଶତ କୋଟି ରଥ ପଦ୍ମେକ ରାଉତ ।
ସାତକ୍ଷୌଣୀ ବାଦ୍ୟକାର ବୀର ଅଗଣିତ
ପଟ୍ୟେକାର ଫଗାକାର ଅଛନ୍ତି ବହୁତ ।
ଲକ୍ଷେକ ପାଇକ ପାଞ୍ଚଶତ କୋଟି ଜେନା
ଦଶବୃନ୍ଦ ମଲ୍ଲ ପୁଣି ଅଶୀଖର୍ବ ସେନା ।
ସାତସହସ୍ର ପାଞ୍ଚଶତ ବାଉନ ହଜାର
ମଧୁବନ ତୋଟା ଅଟେ ଯେ ଜନେ ଓସାର ।
ସମସ୍ତ ବୁଲିଣ ଦେଖେ ପବନର ବଳା
ଶ୍ରୀରାମଙ୍କୁ ଖୋଜ ଖୋଜ କାହିଁ ନ ପାଇଲା ।
ସାତଦିନ ଖୋଜିଲା ସେ ପବନ କୁମର
ଶ୍ରୀରାମଙ୍କୁ ଖୋଜ ନ ପାଇଲା ହନୁବୀର ।
ଏ ସମୟେ ଯାହା ହେଲ ପାର୍ବତୀ ଗୋ ଶୁଣ
ସଙ୍କେତ ରଖିଛୁ ବୀର ବିଲଙ୍କା ରାବଣ ।
ବିଷ ସରୋବର ଅଛୁ ଉତ୍ତର ଦୁଆରେ
ଜଳ ସରୋବର ଅଛୁ ଦକ୍ଷିଣ ପାଟରେ ।
ମିତ୍ର ହୋଇ କେହୁ ଜଣେ କଟକେ ପଶିଲେ
ଜଳପାନ କରି ଦରଶନ କରେ ଭଲେ ।
ଶତ୍ରୁ ହୋଇ ଯେବେ ଆସି ପଶେ କଟକରେ
ବିଷପାନ କରି ମରେ ସେ ଉତ୍ତର ଦ୍ୱାରେ ।
ଗ୍ରାମଦେବତୀଙ୍କ ଜଗାଇଛୁ ତଥି ପାଶ
ଶତ୍ରୁ ମିତ୍ର ଚହ୍ନିଣ ସେ କରଇ ବିନାଶ ।
ଏମନ୍ତ ସମୟେ ଯାଇ ପବନର ବଳା
ବିଲଙ୍କା ଉତ୍ତରଗଡ଼ ଦ୍ୱାରରେ ମିଳିଲା ।
କାହିଁଗଲେ ରାମ ବୋଲି ମନରେ ଭାଳଇ
କାହାଠାରୁ ଉପଦେଶ ପାଇବଇଁ ମୁହିଁ ।
ଗ୍ରାମଦେବତୀଙ୍କି ଯାଇ ଭେଟିଲା ମାରୁତି
ଶତ୍ରୁ ବୋଲି ଜାଣିକରି ସେ ଗ୍ରାମଦେବତୀ ।
ଏ ବାନର ଶ୍ରୀରାମର ଅଟଇ ଯେ ଦାସ
ଉପାୟେ ଭୁଆଇ ଏହାକୁ କରିବ ବିନାଶ ।

ଏତେ ବୋଲି ମନେ ଭାବି ହୋଇଲେ ବାହାର
ଦେବର୍ଷି ବସିଲେ ହନୁମନ୍ତର କଣ୍ଠର ।
ବାତୁଳ ପରାସ୍ୟେ ହୋଇ ଅଞ୍ଜନାର ବଳା
ଜଳ ପାନ କରି ଯାଇ ଗରଳ ଭକ୍ଷିଲା ।
ଶରୀର ବିକଳ ହେଲା ପାଇ ବିଷଜ୍ୱାଳା
ଚଳି ନ ପାରିଲା ଆଉ ପବନର ବଳା ।
ଯାଇଣ ଶୋଇଲା ଚୂତ ବୃକ୍ଷର ମୂଳରେ
ମିଳାଇ ପଡ଼ିଲା ଦେହ ଗରଳ ଜ୍ୱାଳାରେ ।
ପ୍ରାଣ ବିସର୍ଜିଲା ବୀର ହନୁମନ୍ତ ତହିଁ
ଅସ୍ଥି କୁଡ଼ କୁଡ଼ ହେଲା ମାଂସ ଗଲା ବହି ।
ଏଥୁ ଅନନ୍ତରେ ପ୍ରିୟେ ଶୁଣ ଦିବ୍ୟରସ
ହନୁମନ୍ତ ମରିବାର ହେଲା ଷଣ୍ମାସ ।
ଏସନ ସମୟେ ଦେବୀ ପାର୍ବତୀ ଗୋ ଶୁଣ
କୋପଭରେ ତପ ଯହୁଁ କରନ୍ତି ଶ୍ରୀରାମ ।
ବ୍ରହ୍ମାଙ୍କ ଆସନ କମ୍ପି ଉଠେ ଘନ ଘନ
କମ୍ପମାନ ହୋଇ ଉଠେ ଅମର ଭୁବନ ।
ବ୍ରହ୍ମା ପଚାରନ୍ତି ସୁନାସୀର ମୁଖ ଚାହିଁ
କହ ମୋ ଆସନ ଆଜ କମ୍ପିଲା କମ୍ପାଇ ।
ବୃହସ୍ପତି ବୋଲେ ତପ କରନ୍ତି ଶ୍ରୀରାମ
ମାରି ନ ପାରିଲେ ଯହୁଁ ବିଲଙ୍କା ରାଜନ ।
ତେଣୁ ଘନ ଘନ ତୁମ ଆସନ କମ୍ପିଲା
ଏ ଅମରାବତୀ ପୁର କମ୍ପମାନ ହେଲା ।
ଏହା ଶୁଣି ଦେବଗଣ ବିଚାରିଲେ ବସି
କି ଉପାୟେ ଅସୁରକୁ ମାରିବେ ସେ ଆସି ।
ପବନକୁ ପଚାରିଲେ ତୋର ପୁତ୍ର କାହିଁ
ହନୁ ଆଇଲେକ ସବୁ କାର୍ଯ୍ୟ ସିଦ୍ଧ ହୋଇ ।
କାହିଁ ଅଛି ତୋ କୁମର ଖୋଜ ତୁ ସମୀର
ଏହା ଶୁଣି ପବନ ଯେ ଖୋଜିଲା ସତ୍ୱର ।
ଅଯୋଧ୍ୟା ନଗରଯାକ ଖୋଜିଲା ପବନ
ଶ୍ରୀରାମଙ୍କଠାରେ ନ ଦେଖିଲା ହନୁମାନ ।
ବିଲଙ୍କାରେ ଘରେ ଘରେ ପଶିଣ ଖୋଜିଲା
ନ ପାଇ ହନୁକୁ ବଡ଼ ବିସ୍ମୟ ହୋଇଲା ।
ଦେବଙ୍କ ସଭରେ ଯାଇ କହିଲା ସମୀର
ଖୋଜି ଖୋଜି ନ ପାଇଲି ପୁତ୍ରକୁ ମୋହର ।
କି କରିବି କେଣେ ଗଲା ମୋହର ନନ୍ଦନ
ଏତେ କହି ସଭାମଧ୍ୟେ କାନ୍ଦିଲା ପବନ ।
ଦେଖି ଦେବଗଣ ବୃହସ୍ପତିଙ୍କୁ ଅନାଇ
ପାଞ୍ଜିରେ ଦେଖନ୍ତୁ ହନୁମନ୍ତ ଗଲା କାହିଁ ।
ପାଞ୍ଜି ରେ ବୁଝିଣ ଯେ ଜାଣିଲେ ବୃହସ୍ପତି
ବିଲଙ୍କାରେ ବିଷ ଖାଇ ମରିଛି ମାରୁତି ।
ଦେବଗଣଙ୍କୁ ବୋଇଲେ ହନୁମନ୍ତ ମଲା
ବିଲଙ୍କା ନଗରେ ପଶି ଗରଳ ଖାଇଲା ।
ଶୁଣିଣ ପବନ ଉଚ୍ଚେ କରଇ ରୋଦନ
ନିରୋଧିଲା ଯହୁଁ ମଲେ ଜୀବ ଜନ୍ତୁଗଣ ।
ଦେବତା ବୋଇଲେ କୋପ କରୁ କିସପାଇଁ
ଦେବା ଆମ୍ଭେମାନେ ତୋର ପୁତ୍ରକୁ ଜିଆଇଁ ।
ଶୁଣିଣ ପବନ ଆନନ୍ଦିତ ହେଲା ମନେ
ବିଲଙ୍କାକୁ ବିଜେକଲେ ଦେବଗଣମାନେ ।
ରାତ୍ର ଅର୍ଦ୍ଧେ ପ୍ରବେଶିଲେ ବିଲଙ୍କା ନଗରେ
ନିଶବ୍ଦେ ରହିଛନ୍ତି ସମସ୍ତ ଅସୁରେ ।
ଯେଉଁଠାରେ ରହିଅଛି ଅଞ୍ଜନା ନନ୍ଦନ
ଏକରୁଣ୍ଡ ହୋଇଣ ମିଳିଲେ ଦେବଗଣ ।
ଅସ୍ଥିମାନ ଆଣି ତହିଁ ଏକଠାବ କଲେ
ସୁନାସୀର ତା ଉପରେ ସୁଧା ବୃଷ୍ଟି କଲେ ।
ସଞ୍ଜିବନୀ ମନ୍ତ୍ର ଗୋଟି ପଢ଼ିଲେକ ଯମ
ଚେତନା ପାଇଣ ଉଠି ବସେ ହନୁମାନ ।
ନୟନ ମେଲିଣ ଚାରିଦିଗକୁ ସେ ଚାହେଁ
ଦେବଙ୍କୁ ଦେଖିଣ ହନୁ ନମସ୍କାର ହୋଏ ।
ଓଳଗିଣ ବିନୟରେ ବୋଲଇ ବଚନ
ସମସ୍ତେ ତ ଅଛ କାହିଁ ଅଛନ୍ତି ଶ୍ରୀରାମ ।
ପବନକୁ ହନୁ ସ୍ନେହେ ଧରିଲା କୋଳରେ
ରାମ କାହିଁ ଛନ୍ତି ବୋଲି ମାରୁତି ପଚାରେ ।
ବ୍ରହ୍ମା ଯେ ବୋଇଲେ ରାମ ଏଥେ ଆସିଥିଲେ
ଅସୁରର ତାଳ ବାତ ଘାତେ ଉଡ଼ିଗଲେ ।
ବୃଦ୍ଧଗଣ୍ଡୁକୀ କୂଳରେ ଅଛନ୍ତି ଶ୍ରୀରାମ
ଦଶଦ୍ୱାର ରୁନ୍ଧି ଘୋର ତପସ୍ୟାରେ ମଗ୍ନ ।
ବିଳମ୍ବ ନ କର ଯାଅ ପବନ ତନୁଜ
ଯେମନ୍ତ ହୁଅଇ ବାବୁ କର ଦେବକାର୍ଯ୍ୟ ।
ଏତେ ବୋଲି ଆଶ୍ୱାସନା କଲେ ଦେବଗଣ
ବୋଇଲେ ତୋ ଦେହ ହେଉ ବଜ୍ରହୁଁ କଠିନ
ଅଗ୍ନିରେ ଶସ୍ତ୍ରରେ ଭେଦ ନୋହୁ ତୋ ଶରୀର
ଶ୍ରୀରାମଙ୍କ ଭକତ ତୁ ଦେବକାର୍ଯ୍ୟ କର ।

ଏତେ ବୋଲି ହନୁ ଅଙ୍ଗେ ଲଗାଇଲେ କର
ବଜ୍ରହୁଁ କଠିନ ହେଲା ହନୁର ଶରୀର ।

—ଃ—ଃ—

## ହନୁମାନ ଶ୍ରୀରାମଙ୍କ ଭେଟ ଓ ହନୁ ସହସ୍ରଶିରା ରାବଣ ଗର୍ଭେ ରାମଙ୍କୁ ସ୍ମରଣ କରିବା

ଈଶ୍ୱର ବୋଇଲେ ଦେବୀ ପାର୍ବତି ଗୋ ଶୁଣ
ସ୍ୱର୍ଗପୁରେ ଚଳିଗଲେ ସର୍ବ ଦେବଗଣ ।
ଏଥୁ ଅନନ୍ତରେ ପୁଣି ପବନର ବଳା
ଶ୍ରୀରାମ କାରତା ପାଇ ହରଷିତ ହେଲା ।
ଅଲଙ୍କାରୁ ବାହାରିଲା ପବନ ନନ୍ଦନ
କହୁଁ କହୁଁ ବହମିଣ ବ୍ୟାପିଲା ଗଗନ ।
ପ୍ରଚଣ୍ଡ ପର୍ବତେ ଯାଇଁ ତକ୍ଷଣେ ମିଳିଲା
ଉତ୍ତର ମୂରତି ହୋଇ ହନୁ ଚଳିଗଲା ।
ରବି ପାଟିଗଲା ବେଳ ହେଲା ଏକଦଣ୍ଡ
ବୃଦ୍ଧଗଣ୍ଡୁକୀରେ ଉଦେ ହେଲେ ମାରତଣ୍ଡ ।
ଶ୍ରୀରାମଙ୍କୁ ହନୁମାନ ବୁଲିଣ ଖୋଜିଲା
ପର୍ବତରେ ଉଠି ଚଉଦିଗ ଅନାଇଲା ।
ବନରେ ପଶିଲା ହନୁମନ୍ତ ବୀରବର
ଦେଖିଲା କରନ୍ତି ତପ ସେ କୋଦଣ୍ଡଧର ।
ମନପବନକୁ ରୁନ୍ଧି ଅଛନ୍ତି ଶ୍ରୀରାମ
ଅନଳ ପରାୟେ ଜଳେ ରାମଙ୍କ ନୟନ ।
ଭୟେ କମ୍ପମାନ ଦେଖି ରାମ କୋପ ମୂର୍ତ୍ତି
କି ବୁଦ୍ଧି କରିବି ବସି ବିଚାରେ ମାରୁତି ।
ମୋତେ ଜାଣି ମହାକୋପ କରନ୍ତି ଶ୍ରୀରାମ
ଏତେ ଭାଳି ହନୁମନ୍ତ କଲା କ ପ୍ରଣାମ ।
ପ୍ରଣାମ କରିଣ ହନୁ ଆଗରେ ବସିଲା
କପାଳରେ କର ଦେଇ ନିଜକୁ ନିନ୍ଦିଲା ।
ବିକଳ ହୋଇଣ ପୁଣି ଅନେକ କାନ୍ଦିଲା
କାନ୍ଦି କାନ୍ଦି ହନୁମନ୍ତ ଭୂମିରେ ଲୋଟିଲା ।
ହତାଶ ହୋଇଣ ହନୁ ଦଶଦିଗ ଚାହେଁ
କ୍ଷଣେ କାନ୍ଦେ କ୍ଷଣେ ଉଠେ ଭୂମିପରେ ଶୁଏ
ପୁଣି ହନୁ ଶ୍ରୀରାମଙ୍କ ସନ୍ନିଧିକୁ ଯାଇ
କରଯୋଡ଼ି ପାଦପଦ୍ମ ତଳରେ ପଡ଼ଇ ।
ଅନେକ ବିକଳ ଯହୁଁ ହେଲା ହନୁବୀର
ତପଭଙ୍ଗି ଅନାଇଲେ ସେ କୋଦଣ୍ଡଧର ।

ପୁଣ ପୁଣ ହନୁମନ୍ତ ପାଦରେ ପଡ଼ଇ
ଏଡ଼େ ନିରାଧାର ତପ କିମ୍ପାଇ ଗୋସାଇଁ ।
ପରମପୁରୁଷ ପ୍ରଭୁ ତୁ କାହାକୁ ଡରୁ
ଏ ଛାର ଦଇତ୍ୟ ପାଇଁ ଏତେ ତପ କରୁ ।
ଶ୍ରୀରାମ ବୋଇଲେ ଆରେ ଶୁଣ ହନୁମାନ
ଏକା ଦଇତ୍ୟକେ ମୁହିଁ ପାଇଲି କଷଣ ।
କରତାଳି ବାତଘାତେ ଉଡ଼ିଲି ଶୂନ୍ୟରେ
ଆରେ ହନୁ ପଡ଼ିଲି ମୁଁ ଆସି ଏତେ ଦୂରେ ।
କହ ବାବୁ କି ଉପାୟେ ଅସୁର ମରିବ
ମହା ବଳୀୟାର ସେହି ଦୁର୍ଦ୍ଦାନ୍ତ ଦାନବ ।
ହନୁମନ୍ତ ବୋଲେ ପୁଣ ଶୁଣ ରଘୁରାଜ
ମୁହିଁ ଯେ ବୁଝିଲି ଆଜ ଦୈତ୍ୟ ବଳବୀର୍ଯ୍ୟ ।
ମନ୍ତ୍ରୀ ଯେନ ଭାଳୁଥିଲା ସେ ଦୈତ୍ୟ ରାଜନ
ଗୁପତରେ ରହି ସବୁ କଲି ମୁଁ ଶ୍ରବଣ ।
ମନ୍ତ୍ରୀକି ପୁଛିଲା ସେହି ଅଲଙ୍କା ରାଜନ
ଶ୍ରୀରାମ ଅଟନ୍ତି କହ କାହାର ନନ୍ଦନ ।
ମନ୍ତ୍ରୀ ତାର ବୋଇଲା ଯେ ଅଯୋଧ୍ୟା ଦେଶର
ସୂର୍ଯ୍ୟବଂଶେ ଜାତ ଦଶରଥଙ୍କ କୁମର ।
ରାବଣ ମାରିଲା ସେହି ଲଙ୍କା ନାଶ କଲା
ଏବେ ଆସି ଏ ଅଲଙ୍କା ପୁରେ ଧାଡ଼ିଦେଲା ।
ଆଜ୍ଞା କଲେ ଶ୍ରୀରାମ ପାଦେ ପଶିବା ଶରଣ
ରାମ ଦୟା କଲେ ସିନା ହୋଇବା ରାଜନ ।
ମନ୍ତ୍ରୀ ମୁଖୁଁ ଶୁଣି କୋପ କଲା ସେ ଅସୁର
ବୋଇଲା ରାମକୁ କିମ୍ପା ମୋର ଏତେ ଡର ।
ମୋତେ ମାରିବାକୁ କେରେ ଅଟେ ସେ ଭଜନ
ତିନିପୁରେ ମୁହିଁ ମହାପ୍ରତାପୀ ରାଜନ ।
ଦେବତାମାନଙ୍କୁ ମୁହିଁ ପାଦରେ ବାନ୍ଧଇ
ଯମ ମୋର ବାଡ଼ିଆଟି ସର୍ବଦା ଖଟଇ ।
କୁବେର ଦେବତା ମୋର କାଟଇ ମହଲ
ନିମିଷକେ ବୁଲଇ ମୁଁ ବ୍ରହ୍ମାଣ୍ଡ ସକଳ ।
ଯେବେ ମୁହିଁ ଶ୍ରୀରାମରେ ପଶିବି ଶରଣ
କିମ୍ପାଇ ଡରିବେ ଆଉ ମୋତେ ଦେବଗଣ ।
ଏମନ୍ତ ବଚନ ଦେବ ଶୁଣି ଅଲଙ୍କାରେ
ସାତଦିନ ଖୋଜିଲି ମୁଁ ତୋତେ ସେହିପୁରେ
ଲଙ୍କା ନଗରଯାକ ମୁଁ ସକଳ ବୁଲିଲି
ଜଳ ମନେ କରି ମୁହିଁ ଗରଳ ଭକ୍ଷିଲି ।

ଗରଳ ଭକ୍ଷଣ ହେଲ ମାଂସ ଚର୍ମ ସ୍ନାନ
ଗନ୍ଧା ହୋଇଥିଲ ଅସ୍ଥି ଏକାଠାବେ ପୁଣ ।
ଦେବଗଣ ଆସି ମୋତେ ଦେଲେକ ଜୀଆଇଁ
ତୁମ୍ଭର ବାରତା ଦେବ ବ୍ରହ୍ମା ଦେଲେ କହି ।
ଆବର ବୋଇଲେ ତହିଁ ଦେବକାର୍ଯ୍ୟ କର
ଯେମନ୍ତେ ଶ୍ରୀରାମ ଆସି ମାରନ୍ତୁ ଅସୁର
ଦେବଙ୍କ ମୁଖର ଶୁଣି ଅଇଲ ମୁଁ ଧାଇଁ
ଭେଟ ହେଲ ଆଉ ମନେ ଭାଳ କାହିଁ ପାଇଁ ।
ଚାଲ ବଳଙ୍କାକୁ ଯିବା ବେଗେ ହୁଅ ସଜ
ମାରିବା ଅସୁର ବଂଶ ହେବ ଦେବକାର୍ଯ୍ୟ ।
ଶୁଣିଣ ଶ୍ରୀରାମ ମନେ ହୋଇଲେ ହରଷ
ହନୁକୁ ପୁଚ୍ଛନ୍ତି ପୁଣି ପ୍ରଭୁ ରଘୁଶିଷ୍ୟ ।
ତୋ ମନକୁ ଆସଇ କି କହ ହନୁବୀର
ମାରି କି ପାରିବ ମୁହିଁ ବଳଙ୍କା ଅସୁର ।
ହନୁମାନ ବୋଲେ ଦେବ ଭାଳୁଛ କମ୍ପାଇଁ
ମନ୍ତ୍ରୀ ତାର ଅଧଇର୍ଯ୍ୟ ହେଲାଣି ଗୋସାଇଁ ।
ନରପତି ଅଧଇର୍ଯ୍ୟ ନୋହିଲେକ ହେବ
ମରଣ ନିକଟ ତାକୁ ହେଲାଣି ରାଘବ ।
ରାଜାଠାରୁ ମନ୍ତ୍ରୀ ଜାଣ ଅଟେ ବଳୀୟାର
ସେହି ଡରିଲାଣି ନିଶ୍ଚେ ମରିବ ଅସୁର ।
ଏ ସମୟେ ଅନୁକୂଳ କରିବା ଶ୍ରୀରାମ
ମୋହର ପିଠିରେ ଦେବ କର ଆରୋହଣ ।
ଏହା ଶୁଣି ତତକ୍ଷଣେ ଉଠି ନୃପଧାରୀ
ସେ ଗଣ୍ଡୂକୀ ନଦୀଜଳେ ବେଗେ ସ୍ନାନସାରି ।
ତରପଣ ସାରି ରାମ କୂଳରେ ମିଳିଲେ
ଦେବପୂଜା ସାରି ଫଳ ମୂଳ ଯେ ଭୁଞ୍ଜିଲେ ।
ସନ୍ଧ୍ୟା ଆସି ପରବେଶ ହୋଇଲା ସେ ଦିନ
ଶୋଇଲେ ପର୍ବତ ପରେ ସେ ରଘୁନନ୍ଦନ ।
ମାରୁତି ଶୋଇଲା ଶ୍ରୀରାମଙ୍କ ପାଦତଳ
ଅଯୋଧ୍ୟାର କଥା ପଚାରନ୍ତି ରଘୁବୀର ।
ମାତାର କୁଶଳ ପୁଣି ଜାନକୀ ବାରତା
ଭରତ ବୃତ୍ତାନ୍ତ ଆଉ ଅଯୋଧ୍ୟାର କଥା ।
ସମସ୍ତ ବୁଝାଇ କହେ ବୀର ହନୁମାନ
ଶୁଣୁ ଶୁଣୁ ଶୋଇଲେ ସେ କୋଦଣ୍ଡ ଧାରଣ ।
ଉଜାଗର ହୋଇ ଜଗି ବସେ ହନୁମାନ
ରବି ପାହିଗଲା ଶଙ୍ଖ ଶୁଭେ ଘନ ଘନ ।

ଉଠି ବେଗେ ସ୍ନାନକଲେ କୋଦଣ୍ଡ ଧାରଣ
ପୂଜା ସାରି ଫଳ ମୂଳ କରନ୍ତି ଭକ୍ଷଣ ।
ଅନୁକୂଳ ବେଳ ଜାଣି ଜାନକୀ ରମଣ
ହନୁମନ୍ତ ପିଠିରେ ସେ କଲେ ଆରୋହଣ ।
ଦକ୍ଷିଣ ମୁରତିହୋଇ ଚଳେ ହନୁମନ୍ତ
ଆନନ୍ଦରେ ଦେବତାଏ ସ୍ୱର୍ଗେ କଲେ ନୃତ୍ୟ ।
ପ୍ରଚଣ୍ଡ ପର୍ବତେ ମିଳିଲେକ ରଘୁପତି
ଶଙ୍କର କହନ୍ତି ଶୁଣ ଦେବୀ ଗୋ ପାର୍ବତୀ ।
ଅପୂର୍ବ ରହସ୍ୟ ଏ ବଳଙ୍କା ରାମାୟଣ
ଅସମ୍ଭବ ବୃତ୍ତାନ୍ତ ଯେ କରଇ ରାବଣ ।
କାହାଠାରୁ ବର ପାଇ ଅଟେ ବଳୀୟାର
ବରଷକ ପୂର୍ଣ୍ଣ ହେଲେ କରଇ ଆହାର ।
ମାହେନ୍ଦ୍ର ବେଳାରେ ଯାଇ ଆସ୍ଥାନେ ବସଇ
ଦୁଇ ସହସ୍ର ଭୁଜକୁ ଦିଅଇ ବଢ଼ାଇ ।
ପର୍ବତ କନ୍ଦରେ ବନେ ଯେତେ ଜୀବଗଣ
ଗୋ ବ୍ରାହ୍ମଣ ପଶୁ ପକ୍ଷୀ ନ କରେ ବାରଣ ।
ହସ୍ତେ ଯାହା ପଡ଼େ ତାହା ଆଣି ଗର୍ଭେଭରେ
ତାହାର ଭୋଜନ ପାଳି ପଡ଼େ ସେ ଦିନରେ
ବଳଙ୍କା ନଗର ମଧ୍ୟେ ପଡ଼ଇ ଚହଳ
କେ ବୋଲଇ ପଳା ପଳା କେ ହୁଏ ବିକଳ ।
ବନ୍ଧୁ କୁଟୁମ୍ବ ମାନଙ୍କୁ ଘେନିଣ ପଳାନ୍ତି
ଝାଡ଼ ବାଡ ପର୍ବତରେ ଯାଇଣ ଲୁଚନ୍ତି ।
କେତେଯାଇଁ ପରବତ ହୋଟରେ ଲୁଚିଲେ
କେତେ ପଳାଇ ନ ପାରି ଶରଣ ପଶିଲେ ।
ପ୍ରଚଣ୍ଡ ପର୍ବତେ ଥାଇ ପ୍ରଭୁ ରଘୁପତି
ଦେଖିଲେ ସେ ନଗରଲୋକେ ପଳାଇ ଆସନ୍ତି ।
ହନୁକୁ ବୋଲନ୍ତି ପ୍ରଭୁ ରଘୁକୁଳ ବୀର
କମ୍ପାଇଁ ପଳାଇଛନ୍ତି ତାହାଙ୍କୁ ପଚାର ।
ହନୁମନ୍ତ ପଚାରଇ ନଗରଲୋକେ ଶୁଣି
ତୁମ୍ଭେମାନେ ପଳାଉଛ କୁହ କାହିଁପାଇଁ ।
ଅସୁର ବୋଲନ୍ତି ଆଜ ବଇତିର ଦିନ
ରାଜାଙ୍କ ଭୋଜନ ପାଳି ପଡ଼ିଅଛି ପୁଣ ।
ତେଣୁ ବାବୁ ଏ ନଗରେ ପାଦ୍ୟେଡ଼ା ପଡ଼ଇ
ଏହାଶୁଣି ପଚାରନ୍ତି ରଘୁକୁଳ ସାଇଁ ।
କେମନ୍ତେ ଭୋଜନ କରେ ତୁମ୍ଭ ନୃପବର
ଅସୁରେ ବୋଇଲେ ତୁମ୍ଭେ ସାବଧାନେ ଶୁଣ

ମାହେନ୍ଦ୍ର ଯୋଗରେ ରାଜା ଆସ୍ଥାନେ ବସଇ
ଦୁଇ ସହସ୍ର ଭୁଜକୁ ଦିଅଇ ବଢ଼ାଇ ।
ଯେ ପଡ଼ଇ ହସ୍ତେ ତାହା ପୂରଇ ଗର୍ଭରେ
ତେଣୁ ପାପ୍ୟେଡ଼ା ପଡ଼ୁଛୁ ଆଜ୍ଞ ଏ ନଗରେ ।
ଏତେ ବୋଲି ସର୍ବେ ତହିଁ ଗଲେକ ପଳାଇ
ଚମତ୍କାର ହେଲେ ଶୁଣି ରଘୁକୁଳ ସାଇଁ ।
ହନୁକୁ ଚାହିଁଣ ପୁଣ ବୋଲନ୍ତ ଶ୍ରୀରାମ
ଏଥିର ବିଚାର ବାବୁ କହ ହନୁମାନ ।
ଆଜ୍ଞ ଆମ୍ଭେ ରାକ୍ଷସର ପୁରକୁ ନ ଯିବା
ଏହି ପର୍ବତରେ ଆଜ ଦିନକ ରହିବା ।
ଆଜ୍ଞ ଗଲେ ବାବୁରେ ଆମ୍ଭଙ୍କୁ ଯଶ ନାହିଁ
ପଡ଼ିଲେ ଅସୁର ହସ୍ତେ ପ୍ରମାଦ ଘଟଇ ।
ପୁଣ ପୁଣ ହନୁମନ୍ତ ଯୋଡ଼ି ବେନିକର
ବୋଲଇ ହେଦେବ ସାବଧାନେ ହେଭୁକର ।
ପର୍ବତରେ ତୁମ୍ଭେ ରହିଥିବ ହେ ଗୋସାଇଁ
ବିଲଙ୍କା ପୁରକୁ ଆଜ୍ଞ ଯାଉଅଛୁ ମୁହିଁ ।
ଗଗନ ମାର୍ଗରେ ଦେବ ମୁହିଁ ଉଡ଼ିଯିବ
ପାଟି ବିସ୍ତାରିଲେ ତାର ଗର୍ଭରେ ପଶିବ ।
ଅନ୍ତନାଡ଼ୀ ଛିଣ୍ଡାଇବ ଗର୍ଭ ମଧ୍ୟେ ପଶି
ମରିବ ଦଇବ ନଷ୍ଟେ ମୁଁ ଭେଟିବ ଆସି ।
ଶ୍ରୀରାମ ବୋଇଲେ ସେହି ବଳିଷ୍ଠ ଅସୁର
ପ୍ରାଣ କି ପାଇବୁ ହନୁ ପଡ଼ିଲେ ହସ୍ତର ।
ଗର୍ଭରେ ପଡ଼ିଲେ ହନୁ ଆସି ନ ପାରିବୁ
ଅକାରଣେ କମ୍ପା ବାବୁ ପ୍ରାଣ ହରାଇବୁ ।
ପର ଲଗି କମ୍ପା ମରିବୁରେ ହନୁବୀର
ଆସ ଆଜ ରହିବା ଏ ପର୍ବତ ଉପର ।
ଏହାଶୁଣି ହନୁବୀର ବୋଲେ ଯୋଡ଼ି ପାଣି
ପର ବୋଲି କମ୍ପା ମୋତେ କୁହ ରଘୁମଣି ।
ମୁହିଁତ ତୁମ୍ଭର ଦାସ ଅଟେ ପରଚାର
ଆଜ କମ୍ପା ପର ମୋତେ ବୋଲ ରଘୁବୀର ।
ଏବେ ମୋତେ ଆଜ୍ଞା ଦିଅ ବୀର ମାରତଣ୍ଡ
ମୋଡ଼ି ପକାଇବ ଦୈତ୍ୟ ସହସ୍ରେକ ମୁଣ୍ଡ ।
ବିଲଙ୍କା ପୁରକୁ ଦେବ ଉପାଡ଼ି ଆଣିବ
ସପତ ସମୁଦ୍ର ଜଳ ପିଇ ଶୁଖାଇବ ।
ପର ବୋଲିକରି ମୋତେ ବୋଇଲେ କମ୍ପାଇଁ
ଥାଅ ତୁମ୍ଭେ ପର୍ବତରେ ଯାଉଅଛୁ ମୁହିଁ ।

ଏତେ ବୋଲି ହନୁମାନ ତହୁଁ ଚଳିଗଲା
ଏକ ଗୋଟି ଗୁମ୍ଫା ସେହି ପର୍ବତେ ଦେଖିଲା
ତହିଁର ଭିତରେ ହନୁ ରାମଙ୍କୁ ରଖାଇ
ପର୍ବତ ଉପାଡ଼ି ଆଣି ଗୁମ୍ଫା ଦ୍ୱାରେ ଦେଇ ।
ଶ୍ରୀରାମ ବୋଇଲେ ଯେବେ ବିଲଙ୍କାକୁ ଯିବୁ
ବିଚାରଣ ହନୁମନ୍ତ କାର୍ଯ୍ୟ କରୁଥିବୁ ।
ହେଉ ବୋଲି ହନୁମନ୍ତ ପାଦରେ ପଡ଼ିଲା
ଯାଉଅଛୁ ଦେବ ବୋଲି କର ସେ ଯୋଡ଼ିଲା
ଶ୍ରୀରାମ ବୋଇଲେ ବାବୁ ତୋର ଶୁଭ ହେ
ତୋହର ବୁଦ୍ଧିରେ ଏ ବିଲଙ୍କା ନାଶଯାଉ ।
ଏକମୁଖ ହୋଇ ତହୁଁ ଚଳେ ହନୁମାନ
ବିଲଙ୍କାରେ ପହଞ୍ଚିଲା ପାଞ୍ଚଘଡ଼ି ଦିନ ।
ଜଉତିଷ ଜଣାଇଲା ନୃପତି ଆଗରେ
ହୋଇବ ମହେନ୍ଦ୍ର ବେଳା ସପତ ଘଡ଼ିରେ ।
ଶୁଣିଣ ନୃପତି ବେଗେ ସ୍ନାହାନ ସାରିଲା
ଦେବାଳୟେ ପଶି ଦେବତାଙ୍କୁ ପୂଜା କଲା ।
ଚାରିବେଦ ପଢି ଦୈତ୍ୟ ଆହୁତି ଦିଅଇ
ଦୋହରା ଗୃହରେ ଅଗ୍ନି ଶାନ୍ତ ଯେ କରଇ ।
କହୁଁ କହୁଁ ଛଅଘଡ଼ି ହେଲା ଦିନକର
ବାହାର ଅବକାଶରେ ବିଜେ ନୃପବର ।
ସହସ୍ରେ ମୁକୁଟ ମୁଣ୍ଡେ ବାନ୍ଧିଲା ଦଇତ
ଦୁଇ ସହସ୍ର ହାତରେ ବାନ୍ଧେ ଖାରନେତ ।
ଅଳଙ୍କାର ଆଭରଣ ହୋଇଲା ରାଜନ
ବେଶ ହେଉ ହେଉ ହେଲା ସାତଘଡ଼ି ଦିନ ।
କ୍ଷୁଧାରେ ଅନଳ ପ୍ରାୟେ ଜଳଇ ଉଦର
ବିକରାଳ ମୂରତି ଧଇଲା ଦୈତ୍ୟବୀର ।
କୋପଭରେ ଦ୍ୱିସହସ୍ର ଲୋଚନ ବୁଲାଇ
ଦ୍ୱିସହସ ଭୁଜକୁ ସେ ଦେଲକ ବଢ଼ାଇ ।
ତାହାଦେଖି ଦୈତ୍ୟମାନେ ବେଗେ ପଳାଇଲେ
ନୃପତିର ନିକଟରେ କେହି ନ ରହିଲେ ।
କର ବଢ଼ାଇଣ ସେହି ପ୍ରତାପୀ ଅସୁର
ଗିରି କନ୍ଦରିରୁ ପଶୁ ଧଇଲା ବିସ୍ତାର ।
ଗୋ ବ୍ରାହ୍ମଣ ଆଦି ଯେତେ ପଶୁ ପକ୍ଷୀଜାତି
ସଭିଙ୍କି ଧଇଲା ହୋଇ କୋପାନଳ ମୂର୍ତ୍ତି ।
ସିଂହ ବ୍ୟାଘ୍ର ମୃଗ ଗଣ୍ଡା ଗୟଳ ଏମାନ
ଦରାଣ୍ଡି ଧଇଲା ହସ୍ତେ ଅସୁର ରାଜନ ।

ଶ୍ୱାସପୂର୍ଣ ପରଯନ୍ତେ ଧଇଲା ଅସୁର
ପାଟି ବସ୍ତାରଣ ତାହା କରଇ ଆହାର ।
ଯେତେ ପଶୁ ପକ୍ଷୀ ଥିଲେ ବିଲଙ୍କା ନଗରେ
ହନୁ ସହିତରେ ସର୍ବେ ପଶିଲେ ଗର୍ଭରେ ।
ତଣ୍ଟି ସଳଖରୁ କରେ ଅଣ୍ଡାଳଇ ହନୁ
ଥଳକୂଳ ନ ପାଇଲା ଅଞ୍ଜନାର ସୁନୁ ।
ଅସୁର ଉଦର ମଧ୍ୟେ ଯାଇଣ ମିଳିଲା
ଅନ୍ତନାଡ଼ୀ ଖୋଜଇ ସେ ପବନର ବଳା ।
ହାତକୁ ଲାଗିଲା ନାଡ଼ୀ ମେରୁକଳା ପ୍ରାୟେ
ଦେଖି ଚମତ୍କାର ହେଲା ପବନ ତନୟେ ।
ବିକଳ ହୋଇଣ କାନ୍ଦେ ପବନ କୁମର
କେମନ୍ତେ ଅସୁର ଗର୍ଭୁ ହୋଇବି ବାହାର ।
ଅଗାଧ ସମୁଦ୍ର ପ୍ରାୟେ ଅସୁର ଉଦର
ଅନ୍ତନାଡ଼ୀ ହୋଇଅଛି ମେରୁ ପରକାର ।
ରାମ ରାମ ବୋଲି ଉଚ୍ଚେ ଡାକେ ହନୁମାନ
ଆହେ ରଘୁନାଥ ନଷ୍ଟେ ଗଲା ମୋ ଜୀବନ ।
ରକ୍ଷାକର ରକ୍ଷାକର ହେ କୋଦଣ୍ଡଧର
ଅସୁର ଗର୍ଭରେ ଜୀର୍ଣ୍ଣ ହେଲା ଏ ଶରୀର ।
ଯହୁଁ ଶ୍ରୀରାମଙ୍କୁ ଉଚ୍ଚେ ଡାକିଲା ମାରୁତି
ଭକତବାନ୍ଧବ ପ୍ରଭୁ ଜଗତର ପତି ।
ପର୍ବତ କନ୍ଦରେ ଥାଇ ଜାଣିଲେକ ତାହା
ରକ୍ଷିଲ ରକ୍ଷିଲ କହି ଟେକଦେଲେ ବାହା ।



## ହନୁ ଓ ସହସ୍ରରାବଣର କଥୋପକଥନ ଏବଂ ସପ୍ତଶିରା ମନ୍ତ୍ରୀର ହନୁମାନ ସଙ୍ଗେ ଯୁଦ୍ଧ ଓ ରାମଙ୍କ ହସ୍ତେ ମୃତ୍ୟୁ

ଏଥୁ ଅନନ୍ତରେ ଦେବୀ ପାର୍ବତୀ ଗୋ ଶୁଣ
ଅପୂର୍ବ ଚରିତ ଏ ବିଲଙ୍କା ରାମାୟଣ ।
ରାମ ରାମ ଶବ୍ଦ ଗର୍ଭୁ ଉଠେ ଘନ ଘନ
ସେ ଶବଦ ଶୁଣି ରାଜା ଡେରିଲା ଯେ କାନ ।
ଗର୍ଭକୁ ନିରୀକ୍ଷି ଚାହିଁ ଭାଳଇ ମନରେ
ରାମ ରାମ ଶବଦ ଯେ ଶୁଭୁଛି ଗର୍ଭରେ ।
ଏକ ରାମ ଆସି ମୋତେ ଯୁଦ୍ଧ ମାଗୁଥିଲା
ସେ ରାମ କି ଏବେ ମୋର ଗର୍ଭରେ ପଶିଲା
ଦେଖିବା କେମନ୍ତେ ରାମ ବୋଲିଣ ବିଚାରି
ପାଟି ବସ୍ତାରଣ ସବୁ ପକାଏ ଉଦ୍‌ଗାରି ।

ଯେତେ ଜୀବଜନ୍ତୁ ଗିଳିଥିଲା ଦୈତ୍ୟପତି
ସବୁ ଉଦ୍‌ଗାରିଲା ସର୍ବେ ପଡ଼ିଲେକ କ୍ଷିତି ।
ଗର୍ଭରୁ ବାହାର ହୋଇ ପଡ଼େ ହନୁମାନ
ଘଡ଼ିକରେ କପିମଣି ପାଇଲା ଚେତନ ।
ଡେଇଁଣ ବସିଲା ହନୁ ରାମନାମ ଧରି
ଏହା ଦେଖି ଚମତ୍କାର ହେଲେ ଦଣ୍ଡଧାରୀ ।
ହନୁକୁ ପଚାରେ ପୁଣି ବିଲଙ୍କା ରାଜନ
କେମନ୍ତେ ଜଠରାନଳେ ନୋହିଲୁ ତୁ ଜୀର୍ଣ୍ଣ ।
କହ କହ ବାନରରେ କାହୁଁ ତୁ ଅଇଲୁ
ମୋହର ଗର୍ଭରେ ଆସି କିମ୍ପାଇ ପଶିଲୁ ।
କେଉଁ ରାଜ୍ୟେ ଘର ତୋର ତୁ କାହା କୁମର
ତୋର ପିତା ମାତା କିଏ କାର ପରିବାର ।
ଶୁଣି ହନୁମନ୍ତ ବୋଲେ ଶୁଣରେ ଦଇତ
କିଷ୍କିନ୍ଧ୍ୟାରେ ଘର ମୋର ପବନର ସୁତ ।
ହନୁମନ୍ତ ନାମ ମୋର ଶ୍ରୀରାମ ସେବକ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ ଜିଣିପାରେ ଏକ ।
ତୋତେ ମାରିବାକୁ ଆସିଥିଲେ ରଘୁସାଇଁ
ସେ ପ୍ରଭୁଙ୍କୁ ଖୋଜିବାକୁ ଆସିଥିଲି ମୁହିଁ ।
ଅଯୋଗେ ପଡ଼ିଲି ମୁହିଁ ତୋହର ଗର୍ଭରେ
ତେଣୁ ଶ୍ରୀରାମଙ୍କୁ ସୁମରିଲି ହୃଦୟରେ ।
ଶୁଣିଣ ସହସ୍ରଶିରା ହସିଣ ବୋଇଲା
ସିଂହ ଶଶା ପ୍ରାୟେ ମୋତେ ଏକଥା ଲାଗିଲା ।
ଏହା ଶୁଣି ପଚାରିଲା ପବନର ସୁତ
ଶୁଣିବା ସେ କଥାଗୋଟି କହରେ ଦଇତ ।
ବିଲଙ୍କା ରାଜନ ବୋଲେ ଶୁଣରେ ବାନର
ଦଣ୍ଡକା ଅରଣ୍ୟେ ଥିଲା ଏକ ସରୋବର ।
ସେ ବନ ମଧ୍ୟରେ ଛନ୍ତି ଯେତେ ଯେତେ ପ୍ରାଣୀ
ନିତି ଆସି ପିଅନ୍ତି ସେ ପୋଖରୀରୁ ପାଣି ।
ଏକ ଦିନକର କଥା ଶୁଣରେ ମର୍କଟ
ବଇଶାଖ ମାସେ ଖରା ହୋଇଛି ନିରାଟ ।
ତୃଷାରେ ଆରତ ହୋଇ ଏକ ଶଶା ଆସି
ପାଣି ପିଉଅଛି ସେହି ପୋଖରୀରେ ପଶି ।
ଦୁର୍ଦ୍ଦାନ୍ତ ନାମରେ ସିଂହ ଥିଲା ସେ ବନରେ
ତୃଷାରେ ଆତୁର ହୋଇ ଆସେ ଅତି ଖରେ
ଦେଖିଲା ସେ ଘାଟେ ଶଶା ପିଉଅଛି ପାଣି
ମନେ ବିଚାରିଲା ମୋତେ ଦେଖିଲେ ଏକ୍ଷଣି ।

ଜଳପାନ ନ କରିବ ପଳାଇବ ଡରେ
ସେହି ପାପେ ପଡ଼ିବ ମୁଁ ନରକ କୁଣ୍ଡରେ ।
ଏତେ ଭଲ ଆଡ଼ହୋଇ ରହିଲ ଗୁପତେ
ସେହି ଶଶା ଗୋଟି ପାଣି ପିଇଲା ନିଶ୍ଚିନ୍ତେ ।
ପିଇସାରି ଉପରକୁ ଆସିବାର ବେଳେ
ପଶୁରାଜ ଦୁର୍ଦ୍ଦାନ୍ତକୁ ଦେଖେ ବେନଡୋଳେ ।
କୂପ ଉହାଡ଼ରେ ଲୁଚି ରହିଅଛି ସେହି
ଏହା ଦେଖି ଶଶା କହେ ମନେ ଗର୍ବ ବହି ।
ଆରେ ସିଂହ ଲୁଚିଲେକି ଛାଡ଼ିଦେବି ତୋତେ
ଆଜ ତୁହି ପଡ଼ିଅଛୁ କାଳଯମ ହାତେ ।
ଯଦ୍ୟପି ମୋ ପାଦେ ତୁହି ପଶିବୁ ଶରଣ
ତେବେ ତୋତେ ଛାଡ଼ିଦେବି ଯିବୁ ଘେନି ପ୍ରାଣ
ଶଶା କଥା ଶୁଣି ସିଂହ ହସି ହସି ବୋଲେ
ମୁହିଁ ଛାର କାହିଁ ସମ ହେବି ତୁମ୍ଭ ତୁଲେ ।
ମେରୁ ଗିରି ହାରିଯିବେ ତୁମ୍ଭଙ୍କୁ ସମରେ
ତୁମ୍ଭ ସମ ବଳବନ୍ତ ନାହିଁ ତ୍ରିପୁରେ ।
ଏବେ ତୁମ୍ଭ ପାଦେ ମୁହିଁ ପଶିଲି ଶରଣ
ଆହେ ପ୍ରଭୁ ଦୟାକରି ଦିଅ ପ୍ରାଣଦାନ ।
ମାଗୁଛି ଏତେକମାତ୍ର ଥାଇ ଏ ବନରେ
କହିବ ଏକଥା ସବୁ ଜନ୍ତୁଙ୍କ ଆଗରେ ।
ସମରେ ଦୁର୍ଦ୍ଦାନ୍ତ ସିଂହ ହାରିଗଲା ମୋତେ
ଶରଣ ପଶିଲା ଭୟେ ମୋର ପାଦଗତେ ।
ଏହା ଶୁଣି ଶଶା ତହୁଁ ଗଲା ଆନନ୍ଦରେ
ବିସ୍ତାରି କହିଲା ସବୁ ଜନ୍ତୁଙ୍କ ଆଗରେ ।
ଏହା ଶୁଣି ଜନ୍ତୁମାନେ ଉପହାସ କଲେ
ପାଗଳ ହୋଇଛି ଶଶା ମନେ ବିଚାରିଲେ ।
ଶଶା କାହୁଁ ସିଂହ ସଙ୍ଗେ କରିବ ସମର
ମୂକ୍ତା ଫଳ ଖାଏ ଯେହ୍ନେ ମାରି କଣ୍ଟର ।
କିବା ଯାକୁ ଛାଡ଼ିଦେଲେ ମାଚ ଜ୍ଞାନ କରି
ଶ୍ରେଷ୍ଠ ଜାତି ହୋଇ କହୁଅଛି କେଉଁପରି ।
ନର ବାନର ମୋ ସଙ୍ଗେ କରିବେ ସମର
ଚଉଦ ଭୁବନ ନାହିଁ ଯା ସମାନ ବୀର ।
ବ୍ରହ୍ମା ଆସି ବେଦ ପଢ଼େ ମୋ ଦୁଆରେ ନିତି
ଭୃତ୍ୟପରି ଖଟିଥାଏ ପାଶେ ଶଚୀପତି ।
ଦେବତାମାନଙ୍କୁ ମୁହିଁ ବାନ୍ଧିଇ ପାଦରେ
ଯମରାଜା ବାଡ଼ିଧାଟି ଖଟେ ନିରନ୍ତରେ ।

କୁବେର ଦେବତା କାଚେ ମୋହର ବସନ
ମୋତେ ମାରିବାକୁ ତୋର ରାମ କି ଭାଜନ ।
ମଚ ଜାତି ବାନରରେ ବନସ୍ତରେ ଥାଉ
ବାଡ଼ ବାଡ଼ ବୁଲି ଫଳ ଚୋରିକରି ଖାଉ ।
ଜାତିରେ ବାନର ତୋର ଜ୍ଞାନ ଅବା କାହିଁ
ଜ୍ଞାନୀଜନ ସଙ୍ଗେ ଯେଣୁ ତୋର ସଙ୍ଗ ନାହିଁ ।
ଏହାଶୁଣି ହନୁମନ୍ତ ହସିଣ ବୋଇଲା
ତୁ ଯାହା କହିଲୁ ମୋର ମନକୁ ତ ଗଲା ।
ଶ୍ରୀରାମ ପ୍ରତିଜ୍ଞା ଅବା ଜାଣିବୁ ତୁ କାହୁଁ
ପରମ ବସ୍ତୁ ସେ ରାମ ରଘୁକୁଳ ରାହୁ ।
ଅସୁର ମାରଣ ସେହୁ ଉଶ୍ୱାସିବେ ଭାର
ନିରାକାର ବସ୍ତୁ ସେହି ଜାଣରେ ପାମର ।
ଯେଉଁ ବୀର ପଶୁ ରାମ ଗରବ ଗଞ୍ଜିଲେ
ତୁହି ନଷ୍ଟେ ଶଶା ତୁଲ୍ୟ ହେବୁ ତାଙ୍କ ତୁଲେ
ଶିବଧନୁ ଭାଙ୍ଗି ବଶ ହେଲେ ବଇଦେହୀ
ବାଳକି ମାରିଣ ସୁଗ୍ରୀବକୁ ରାଜ୍ୟଦେଇ ।
ପର୍ବତ ବହିଣ ବନ୍ଧ ବାନ୍ଧିଲେ ସାଗରେ
ସ୍ୱର୍ଣ୍ଣମୟ ଲଙ୍କାପୁର ଧ୍ୱଂସକଲେ ଶରେ
ମାଇଲେ ରାବଣ ତାର ଭାଇ କୁମ୍ଭକର୍ଣ୍ଣ
ଇନ୍ଦ୍ରଜିତ ସହିତରେ ଯେତେ ବୀରଗଣ ।
ରାବଣକୁ ବଧକରି କୀରତି ରଖିଲେ
ମହାସତୀ ଜାନକୀଙ୍କ ଦୁଃଖ ନିବାରିଲେ ।
ଶରଣ ପଶିଲେ ଆସି ବୀର ବିଭୀଷଣ
ତାହାକୁ ଲଙ୍କାରେ ରାଜା କଲେ ରାମଘଣ ।
ସନ୍ତୋଷେ ଅମରବର ଦେଲେ ତାକୁ ପୁଣି
ଆବର ତାହାକୁ ଦେଲେ ମନ୍ଦୋଦରୀ ରାଣୀ ।
ଏବେ ତୋତେ ମାରିବାକୁ ବିଜେ ରଘୁବୀର
ଅବଶ୍ୟ କାଟିବେ ତୋର ସହସ୍ରେକ ଶିର ।
ମୋତେ ଯେବେ ଆଜ୍ଞା ଦେଇଥାଆନ୍ତେ ଶ୍ରୀରାମ
ଉପାଡ଼ି ନିଅନ୍ତି ତୋର ବିଲଙ୍କା ଭୁବନ ।
ସହସ୍ରେ ମୁଣ୍ଡକୁ ମୁହିଁ ମୋଡ଼ନ୍ତି ତୋହର
ଆଜ୍ଞା ନ ଥିବାରୁ ଛାଡ଼ି ଦେଲିରେ ଅସୁର ।
ଏହାଶୁଣି ହସି ହସି ବୋଲେ ଦୈତ୍ୟେଶ୍ୱର
ତୋହର ପ୍ରତିଜ୍ଞା ମୁହିଁ ଜାଣେରେ ବାନର ।
କାହିଁ ତୋର ରାମକୁରେ ଦେଖାଅନି ମୋତେ
ରାମକୁ ଦେଖିଲେ ମୁହିଁ ଯିବିରେ ପରତେ ।

ହନୁମନ୍ତ ବୋଇଲାରେ ଶୁଣ ଦୁରାଚାରୀ
ଯାହା ଖାଇଅଛୁ ତାହା ପକାନ୍ତ ଉଦ୍‌ଗାର ।
ତୋହର ଗର୍ଭରେ ରହି ଅଛନ୍ତି ଶ୍ରୀରାମ
ଉଦ୍‌ଗାରିଲେ ଦେଖିବୁ ତୁ କୌଶଲ୍ୟା ନନ୍ଦନ ।
ଶୁଣିଣ ଲଙ୍କାପତି ହରଷ ହୋଇଲା
ବଦନ ବିସ୍ତାର କରି ସବୁ ଉଦ୍‌ଗାରିଲା ।
ଦେଖିଲେ ପଡ଼ିଲେ ଜୀବଜନ୍ତୁ ସେ ଯେତେକ
ଗୋରୁ ବିପ୍ର ମୃଗ ବ୍ୟାଘ୍ର ଶୂକର ଅନେକ ।
ଦେଖି ହନୁମନ୍ତ ମନେ ସୁମରେ ସମୀର
ହେ ତାତ ସ୍ୱର୍ଗରୁ ତୁମ୍ଭେ ସୁଧା ବୃଷ୍ଟି କର ।
ଦଇତକୁ ବୋଇଲେ ସେ ଅଞ୍ଜନା ନନ୍ଦନ
ଆରେ ଦୈତ୍ୟ ତୋ ଗର୍ଭରେ ନାହାନ୍ତି ଶ୍ରୀରାମ
ଇନ୍ଦ୍ରକୁ ଚିନ୍ତିଲା ମନେ ମନେ ହନୁବୀର
ସ୍ୱର୍ଗୁ ସୁଧା ବରଷିଲେ ଦେବ ସୁନାସୀର ।
ଜୀବନ ପାଇଣ ସର୍ବେ ଗଲେକ ପଳାଇ
ହନୁକୁ ପ୍ରଶଂସା କଲେ ସ୍ୱର୍ଗେ ସୁରସାଇଁ ।
ସେହିଦିନୁ ଉପବାସେ ରହିଲା ଅସୁର
ବରଷେ ପୂରିଲେ ପୁଣି କରିବ ଆହାର ।
ଅତି ଦୁଃଖେ ରହିଲା ସେ କ୍ଷୁଧା କଷ୍ଟ ସହି
ପ୍ରଚଣ୍ଡ ଗିରିକି ଗଲା ହନୁମନ୍ତ ଡେଇଁ ।
ଶ୍ରୀରାମଙ୍କ ସନ୍ନିଧିରେ ପ୍ରବେଶ ହୋଇଲା
ପର୍ବତ ଗୁହାରୁ ଯାଇଁ ପଥର କାଢ଼ିଲା ।
ଦେଖେ ତହିଁ ବସି ଶର ସଳଖନ୍ତି ରାମ
ପାଦତଳେ ହନୁମାନ କଲାକ ପ୍ରଣାମ ।
ଦେଖି ହରଷ ହୋଇଲେ ପ୍ରଭୁ ରଘୁବୀର
ପଚାରିଲେ କହ ବାବୁ ଦୈତ୍ୟ ସମାଚାର ।
ହନୁ ବୋଲେ ଦେବ ତୁମ୍ଭ ଆଜ୍ଞାରେ ମୁଁ ଗଲି
ସେ ପାପିଷ୍ଠ ଦଇତ୍ୟର ଗର୍ଭରେ ପଶିଲି ।
ଦେଖିଲି ସମୁଦ୍ର ପ୍ରାୟ ତାହାର ଉଦର
ସ୍ଥଳ କୂଳ ନ ପାଇଲି ଆହେ ଚାପଧର ।
ଆକୁଳ ହୋଇ ତୁମ୍ଭଙ୍କୁ ସୁମରନ୍ତେ ମୁହିଁ
ଉଦ୍‌ଗାରି ଅସୁର ମୋତେ ପକାଇଲା ତହିଁ ।
ରାମ କାହିଁ ଛନ୍ତି ବୋଲି ପଚାରନ୍ତେ ମୋତେ
ମୁଁ ବୋଇଲି ଅଛନ୍ତି ସେ ତୋର ଗର୍ଭଗତେ
ଯେତେଯେତେ ଜୀବଜନ୍ତୁ ଦୈତ୍ୟ ଗିଳିଥିଲା
ମୋହର କହନ୍ତେ ସେହି ସବୁ ଉଦ୍‌ଗାରିଲା ।

ମୁହିଁ ସୁମରନ୍ତେ ଇନ୍ଦ୍ର ଅମୃତ ସିଞ୍ଚିଲେ
ଚେତନା ପାଇଣ ସବୁ ଜୀବେ ପଳାଇଲେ ।
ଏହା ଶୁଣି ରଘୁନାଥ ହରଷ ହୋଇଲେ
ଧନ୍ୟ ହନୁମନ୍ତ ବୋଲି ବହୁ ପ୍ରଶଂସିଲେ ।
ଧନ୍ୟରେ ଅଞ୍ଜନାସୁତ ପବନ ତନୟ
ଦୁଃଖ କାଳେ ତୁହି ମୋତେ ହୋଇଲୁ ସହାୟ
ଏବେ କି ବିଚାର କହ ଆହେ ହନୁବୀର
କିପରି ମରିବ ସେହି ପାପିଷ୍ଠ ଅସୁର ।
ମାରୁତି ବୋଇଲେ ଶୁଣ ପ୍ରଭୁ ରଘୁମଣି
ଲଙ୍କା ଭୁବନେ ଛନ୍ତି ବହୁତ ସଇନି ।
ରଥ ଗଜ ଅଶ୍ୱ ପଦାତିକ ଅପ୍ରମିତ
ମହା ବଳୟାର ସେହି ଲକ୍ଷଶିରା ସୁତ ।
ଶୁଣିଣ ଶ୍ରୀରାମ କଲେ ପ୍ରତିଜ୍ଞା ବହୁତ
ଲଙ୍କାରେ ନ ରଖିବି ଗୋଟିଏ ଦଇତ ।
ଗୁମ୍ଫାରୁ ବାହାର ହୋଇ ସନ୍ଧ୍ୟା ସାରି ରାମ
ପ୍ରଚଣ୍ଡ ପର୍ବତ ପରେ କଲେକ ବିଶ୍ରାମ ।
ମରକତ ଶିଳାପରେ ବିଜେକଲେ ରାମ
ଫଳ ମୂଳ ଗୁଡ଼ା ଆଣି ଦେଲେ ହନୁମାନ ।
ଭୁଞ୍ଜିଣ ସନ୍ତୋଷ ହେଲେ କୌଶଲ୍ୟା କୁମର
କ୍ରୋଧେ ଲଙ୍କାକୁ ଦୃଷ୍ଟି ଦେଲେ ବାରମ୍ବାର
ମାରିବି ଦୈତ୍ୟଙ୍କୁ ନଷ୍ଟେ ପ୍ରତିଜ୍ଞା ରଖିବି
ସହସ୍ରେକ ଶିର ତାର କାଟି ପକାଇବି ।
ଏହାକହି ଶିଳାପରେ ଶୋଇଲେ ଶ୍ରୀରାମ
ପାଦପଦ୍ମ ମଞ୍ଚାଳଇ ଅଞ୍ଜନା ନନ୍ଦନ ।
ଏଥୁ ଅନନ୍ତରେ ଶୁଣ ଦେବୀ ଗୋ ପାର୍ବତୀ
ମନ୍ତ୍ରୀଙ୍କି ଘେନିଣ ଭାଳେ ଲଙ୍କା ନୃପତି ।
ବୋଇଲା ବୃତ୍ତାନ୍ତ ଶୁଣ ଆହେ ମନ୍ତ୍ରୀବର
ହନୁମନ୍ତ ନାମେ କପି ଶ୍ରୀରାମର ଚର ।
ଆଜ ସେହି ଆସି ମୋର ଗର୍ଭରେ ପଶିଲା
ରାମ ରାମ ବୋଲି ମୋର ଗର୍ଭୁ ଡାକଦେଲା ।
ଉଦ୍‌ଗାରି ପକାନ୍ତେ ଗର୍ଭୁ ପଡ଼ି ସେ ବାନର
ପଚାରନ୍ତେ ବୋଲଇ ମୁଁ ଶ୍ରୀରାମର ଚର ।
ଏ ନଗ୍ର ମଧ୍ୟରେ ମନ୍ତ୍ରୀ ଶ୍ରୀରାମ ଅଛଇ
ଅକଣ୍ଟକ ରାଜ୍ୟ ମୋର କଣ୍ଟକ ଯେ ହୋଇ ।
ଖୋଜି ମାର ମନ୍ତ୍ରୀ ତାକୁ ହେଳା ତୁ ନକର
କାଲିର ଭିତରେ କାଟି ପକା ତାର ଶିର ।

ମନ୍ତ୍ରୀ ବୋଲେ ଦେବ ମୋର ବଚନ ଶୁଣନ୍ତୁ
ଶ୍ରୀରାମ ସଙ୍ଗରେ କଳି ଗୋଳ ନ କରନ୍ତୁ ।
ନ ଭାଙ୍ଗ ମୋହର ବୋଲ ଆହେ ନୃପବର
ଗୃହଁନ୍ତୁ ଶ୍ରୀରାମ ପାଦେ ପଶିବା ଶରଣ ।
ରାଜା ବୋଲଇ ରେ ମନ୍ତ୍ରୀ ରାମଙ୍କୁ ଡରିଲୁ
କ୍ଷତ୍ରି ଭରି ଗୁଡ଼ ଶ୍ରୀରାମଙ୍କୁ ଭୟକଲୁ ।
ଯେବେ ଭୟକଲୁ ତୁହି ପଶ ଯା ଶରଣ
ଅଧୈର୍ଯ୍ୟ ନକର ମୋତେ ଆହେ ମନ୍ତ୍ରୀଗଣ ।
ନିଶ୍ଚେ କାଲି ଶ୍ରୀରାମଙ୍କୁ ମାରିବଇଁ ମୁହିଁ
ଏତେବୋଲି ପହୁଡ଼ିଲା ବିଲଙ୍କା ଗୋସାଇଁ ।
ରାତ୍ରି ପାହିଗଲା ଉଦେ ହେଲେ ଦିବାକର
ଦୁନ୍ଦୁଭି ନାଦରେ ଚମକିଲା ସୁରପୁର ।
ଶତ୍ରୁ ଉପଦ୍ରବ ଜାଣି ବିଲଙ୍କା ରାଜନ
ସେ ଦିନ ପ୍ରଭାତ କାଳୁଁ ଉଠିଲା ବଦନ ।
ନିତ୍ୟକର୍ମ ସାରି ଆସ୍ଥାନରେ ବିଜେକଲା
ରାଉତ ମାହନ୍ତ ବୀରଗଣଙ୍କୁ ରାଇଲା ।
ପାତ୍ରମିତ୍ର ମନ୍ତ୍ରୀଗଣ ହକାରି ପାଶକୁ
ଶତଶିରା ପୁତ୍ର ପୁଣି ବିଂଶିରା ଭାଇକୁ ।
ସମସ୍ତଙ୍କୁ ଗୃହିଁ ବୋଲେ ବିଲଙ୍କା ରାଜନ
ଶତ୍ରୁ ଉପଦ୍ରବ ହେଲା ମୋହର ଭୁବନ ।
ଶ୍ରୀରାମ ନାମରେ ଏକ ବୀର ଆସିଅଛି
ଏ ଅଜୟ ଗଡ଼ମଧ୍ୟେ ଗୁପତେ ରହିଛି ।
ତାକୁ ଦେଖିବାକୁ ମନ ବଳୁଛି ମୋହର
କିଏ ମୋତେ ମାରିଦେବ ରାମ ଧନୁର୍ଦ୍ଧର ।
ଏହା ଶୁଣି ବୀରମାନେ ପ୍ରତିଜ୍ଞା କରନ୍ତି
ମାରିବୁ ରାମକୁ ଦେବ ନ କର ତୁ ଚିନ୍ତା ।
ଏକ ଜଣକରେ ସେହି କରିବ ବା କିସ
ରଥ ଗଜ ନାହିଁ ତାର କେବଳ ସାହସ ।
ଏଥକୁ ନ କର ଭୟ ଆହେ ନୃପମଣି
ଆଜ ନିଶ୍ଚେ ଶ୍ରୀରାମକୁ ମାରିଦେବୁ ଆଣି ।
ଶୁଣିଣ ନୃପତି ବଡ଼ ହରଷ ହୋଇଲା
ସୈନ୍ୟ ସଜକର ବୋଲି ମନ୍ତ୍ରୀଙ୍କି କହିଲା ।
ବିଜଘୋଷ ଦାରୁଣ ଯେ ଟମକ ନିଶାଣ
ବୀରବାଦ୍ୟ ଶବଦ ଶୁଭଇ ଘନ ଘନ ।
ରାଉତ ମାହନ୍ତ ଯେ ପାଇକ ଫରିକାର
ସୈନ୍ୟ ସେନାପତିମାନେ ହୋଇଲେ ବାହାର
ସାତଲକ୍ଷ ରଥ ପାଞ୍ଚ ସହସ୍ର ପଦାତି
ଏଗାର ସହସ୍ର ବାହାରିଲେ ମତ୍ତହସ୍ତୀ ।
ତିନିଲକ୍ଷ ଉଦଣ୍ଡ ଯେ ସହସ୍ରେକ ଛତ୍ର
ଏକଲକ୍ଷ ମତ୍ତଗଜ ଅୟୁତେକ ରଥ ।
ମହା ମହା ବୀରମାନେ ହୋଇଲେ ବାହାର
ହସ୍ତେ ଘେନିଛନ୍ତି ଶକ୍ତି ମୁଷଳ ମୁଦ୍ଗର ।
କେହି କେହି ଅସିଫର ଗୁରୁଜ ସାବେଳ
ଶଙ୍ଖ କୁନ୍ତ ଘେନି ବାହାରିଲେ ମହାବଳୀ ।
ଟମକ ନିଶାଣ ଶବ୍ଦ ଶୁଭେ ଘନ ଘନ
ପ୍ରଚଣ୍ଡ ପର୍ବତେ ଥାଇ ଶୁଣିଲେ ଶ୍ରୀରାମ ।
ଉଠିଣ ହନୁକୁ ଗୃହିଁ ବୋଇଲେ ସଧୀରେ
ଟମକ ତ ଶୁଭୁଅଛି ବିଲଙ୍କା ଦେଶରେ ।
ଆଜ କି ଯୁଦ୍ଧକୁ ଅବା ଆସିବ ରାଜନ
ପର୍ବତ ଉପରେ ଉଠି ଦେଖ ହନୁମାନ ।
ଏତେ ବୋଲି ସ୍ନାନ କଲେ ପ୍ରଭୁ ରଘୁବୀର
ସନ୍ଧ୍ୟା ଆଦି ନିତ୍ୟକର୍ମ କରିଣ ସତ୍ୱର ।
ପିତୃ ତରପଣ କରି ପର୍ବତରେ ବିଜେ
କୋଦଣ୍ଡ ଆବରି ଶର ବେନିଭୁଜେ ସାଜେ ।
ଫଳମୂଳ ଭୋଜନ କରନ୍ତି ରଘୁବୀର
ପର୍ବତ ଉପରେ ଗୃହେଁ ପବନ କୁମର ।
କହୁଁ କହୁଁ ଘଡ଼ିଏକ ଆସି ହେଲା ଦିନ
ବିଲଙ୍କାରୁ ବାହାରିଲେ ଅସୁର ସଇନ ।
ରଥ ଗଜ ଅଶ୍ୱ ଚଢ଼ି ବୀରେ ମହାବୀରେ
ଆୟୁଧମାନଙ୍କୁ ଘେନି ଅଛନ୍ତି ହସ୍ତରେ ।
ଧାମନ୍ତି ଅସୁରେ ଯେ ଉଠନ୍ତି ଗଳଗାଜ
ଗରଜନ ଘାତେ ମେରୁଗିରି ପଡ଼େ ଭାଜ ।
ପାଦଭରେ ଦଲି ଦଲି ହୁଏ ବସୁନ୍ଧରା
ପାତାଳେ କମ୍ପଇ ଯେ ବାସୁକୀ ଦଣ୍ଡଧାରା ।
ଭୟଙ୍କର ରଡ଼ି ଯେ ଦିଅନ୍ତି ଘନ ଘନ
ଆଷାଢ଼ ମାସରେ ଯେସନେ ମେଘ ଗରଜନ ।
ରଥ ଗହଳରେ ଲୁଚିଗଲେ ଅଂଶୁମାଳୀ
ଅସ୍ତ୍ର ବୁଲାଇଣ ଧାଉଁଛନ୍ତି ମହାବଳୀ ।
ଏଗାର ଯୋଜନ ମାଡ଼ ଯାଉଅଛି ଆଟ
ବନଗିରି କନ୍ଦରରେ ତିଳେ ନାହିଁ ବାଟ ।
ସପ୍ତଶିରା ମନ୍ତ୍ରୀ ତାର ଆଗେ ଆଗୁଆଳୀ
ତଉଦ ଭୁବନେ ଶ୍ରେଷ୍ଠ ଯାହାର ସାବେଳୀ ।

ଗୁଡଚମାନଙ୍କୁ ଗୃହ୍ନି ବୋଲେ ମନ୍ତ୍ରୀଗଣ
ଖୋଜକର ମାର ଯହିଁ ଅଛଇ ଶ୍ରୀରାମ ।
ହେଳାକର ନ କରିବ ତା ସଙ୍ଗେ ସମର
ବଡ଼ଯୋଦ୍ଧା ଅଟେ ଜାଣ ସେହି ରଘୁବୀର ।
ଲଙ୍କାରେ ପଶିଣ ସେହି ମାରଛି ରାବଣ
ବୁଝି ସୁଝି ତା ସଙ୍ଗରେ ଯୁଝ ବୀରଗଣ ।
ଏତେ କହି ମନ୍ତ୍ରୀବର ହେଲା ଆଗୁସାର
ପର୍ବତ ଉପରେ ଥାଇ ଦେଖି ହନୁବୀର ।
ଶ୍ରୀରାମଙ୍କୁ ବୋଲେ ଦେବ ବାହାରିଲେ ଦଣ୍ଡ
ସମ୍ଭାଳ ସମର କର ବୀର ମାରତଣ୍ଡ ।
ଧନୁଶର ଘେନି ତୁମ୍ଭେ ଥାଅ ଏ ପର୍ବତେ
ମୁହିଁ ଯାଇଁ ଯୁଦ୍ଧକରେ ଅସୁରଙ୍କ ସାଥେ ।
ଏତେ ବୋଲି ହନୁମାନ କାୟା ବଢ଼ାଇଲା
ପ୍ରଭୁଙ୍କ ଚରଣ ଧରି ଓଲଗି ହୋଇଲା ।
ଉଠିବସି ହନୁମାନ ସୈନ୍ୟଙ୍କୁ ଦେଖିଣ
ସେଣାପକ୍ଷୀ ପ୍ରାୟେ ବୀର ଉଡ଼ିଲା ଗଗନ ।
ଧନୁହସ୍ତେ ଗୁଣ ଦେଇ ଶ୍ରୀରଘୁନନ୍ଦନ
ସେ ଧନୁକୁ ଧରି ଟଙ୍କାରିଲେ ଘନ ଘନ ।
ପୃଥିବୀ କମ୍ପିଲା ଧନୁ ଟଙ୍କାର ନାଦରେ
ଚମକି ପଡ଼ିଲେ ଶୁଣି ବୀରେ ମହାବୀରେ ।
ଶବ୍ଦବାରି ଯୋଦ୍ଧାମାନେ ଧାଇଁଲେ ସତ୍ୱରେ
ଶ୍ରୀରାମ ଅଛଇ ଏହି ପର୍ବତ ଉପରେ ।
ଗଗନମାର୍ଗରେ ଉଠି ବୀରେ ଗଲେ ଧାଇଁ
ଯେ ଯାହା ଆୟୁଧମାନ ଧରିଣ ବୁଲାଇ ।
ଶ୍ରୀରାମଙ୍କୁ ମାର ବୋଲି ଉଚ୍ଚେ ଡାକ ଦେଲେ
ପ୍ରଚଣ୍ଡ ପର୍ବତ ଚାରି ପାରୁଶେ ବେଢ଼ିଲେ ।
ରଥ ଥୁଆଇଣ ସପ୍ତଶିରା ମନ୍ତ୍ରୀବର
ପର୍ବତ ଉପରେ ଭେଟିଲାକ ରଘୁବୀର ।
ଡାକିଲା ରେ ଧନୁର୍ଦ୍ଧର କେଉଁ ରାଜ୍ୟ ଘର
ଅଜସ୍ର ଗଡ଼ରେ କମ୍ପା ପଶିଲୁ ଆମ୍ଭର ।
ମୃତ୍ୟୁକୁ ସଙ୍ଗରେ ଘେନି କମ୍ପା ତୁ ଅଇଲୁ
ଲଙ୍କାର ରାବଣ ପ୍ରାୟ ମୋତେ ତୁ ମଣିଲୁ ।
ଦେଖିବଇଁ ମୁହିଁ କେତେ ତୋର ଯୋଦ୍ଧାପଣ
ଘରକୁ କି ଫେରିଯିବୁ ଘେନି ତୋର ପ୍ରାଣ ।
ଅସୁରର କଥା ଶୁଣି ହସିଲେ ଶ୍ରୀରାମ
ବୋଇଲେ ବୁଝିବା ଆଜ ତୋର ପରାକ୍ରମ ।

ପର୍ବତ ବହ୍ନିଣ ଘୋର ସିନ୍ଧୁକୁ ବାନ୍ଧିଲି
ଲଙ୍କାଗଡ଼ ମଧ୍ୟେ ପଶି ରାବଣ ମାଇଲି ।
ଶୁଣିଲି ମୁଁ ଅଲଙ୍କାରେ ଅଛି ଏକ ବୀର
ଦେବତାମାନଙ୍କୁ କଷ୍ଟ ଦେଉଛି ଅପାର ।
ପ୍ରତିଜ୍ଞା କରିଛି ତାକୁ ସର୍ବଂଶେ ମାରିବ
ଅଲଙ୍କାଦେଶରେ ଲୁହା ମଇ ବୁଲାଇବ ।
ତୁ ଯେବେ ଆତୁର ହେଉ ଅଛୁରେ ଅସୁର
ଆଜ ତୋତେ ପଠାଇବି ଆଗ ଯମପୁର ।
ମନ୍ତ୍ରୀବର ସପ୍ତଶିରା ଶୁଣି କୋପ କଲା ,
ଲୁହାର ଗୋଟିଏ ଧନୁ ହସ୍ତରେ ଧଇଲା ।
ପାଞ୍ଚଲକ୍ଷ ବାଣ ଦୈତ୍ୟ ବିନ୍ଧିଲାକ ଟାଣି
ଚଳିଗଲା ସେ ନାରାଚ ବଜ୍ରସମ ଜାଣି ।
କଉଶି ବାଣେକ ବିନ୍ଧି ରଘୁକୁଳ ବୀର
ବେନିଖଣ୍ଡ କରିଦେଲେ ଅସୁରର ଶର ।
ଚାରି ପାରୁଶରେ ଦୈତ୍ୟବଳ ବେଢ଼ିଥିଲେ
ଶ୍ରୀରାମଙ୍କ ଉପରକୁ ନାରାଚ ବିନ୍ଧିଲେ ।
ଲକ୍ଷ ଲକ୍ଷ ଶଲ୍ୟ କୁନ୍ତ ମୁଷଳ ମାରନ୍ତି
ଝିଙ୍କପକ୍ଷୀ ପ୍ରାୟୁ ବାଣ ଶୂନ୍ୟେ ଝଟକନ୍ତି ।
କକଡ଼ାମାସରେ ଯେମନ୍ତ ବରଷଇ ନୀର
ସେହିରୂପେ ଅସ୍ତ୍ର ଶସ୍ତ୍ର ପଡ଼େ ନିରନ୍ତର ।
ଏକାଳେ ମୁଦ୍‍ଗର ବାଣ ଚାପେ ବସାଇଲା
କୋପଭରେ ସପ୍ତଶିରା ରାମଙ୍କୁ ବିନ୍ଧିଲା ।
ଦେଖିଣ ଧାଇଁଲା କ୍ରୋଧେ ପବନ କୁମର
ଶ୍ରୀରାମଙ୍କୁ ପଛ କରି ହେଲା ଆଗୁସାର ।
ସେ ବାଣକୁ ଧରି ହନୁ ଭାଙ୍ଗି ପକାଇଲା
ସପ୍ତଶିରା ଉପରକୁ ଫୋପଡ଼ାଇ ଦେଲା ।
ଡେଇଁ ଯାଇ ବାମକରେ ଧଇଲା ତା ଧନୁ
ବଜ୍ରସମ ବିଧା ଏକ ପ୍ରହରିଲା ହନୁ ।
ଚରଣ ଆଘାତେ ପୁଣି ଭାଙ୍ଗିଲା ବିମାନ
ଭୂମିରେ ଅଚେତ ହୋଇ ପଡ଼େ ମନ୍ତ୍ରୀରାଣ ।
ଧାଇଁଯାଇ ହନୁମନ୍ତ ବସିଲାକ ମାଡ଼ି
କ୍ରୋଧଭରେ ଘନ ଘନ ଛାଡ଼େ ସିଂହରଡ଼ି ।
ସପତ ମୁଣ୍ଡକୁ ଧରି ଝିଙ୍କେ ହନୁମାନ
ସପତ ମୁକୁଟ ପୁଣି ପାଦେ କଲା ଚୂର୍ଣ୍ଣ ।
ଘଡ଼ିକ ଉତ୍ତାରୁ ଦୈତ୍ୟ ଚେତନା ପାଇଲା
ହନୁକୁ ଚଉଦ ଭୁଜେ ଅଣ୍ଟାଳି ଧଇଲା ।

କାଖତଳେ ଯାକ ବୀର ଉଠିଲା ସତ୍ୱରେ
ଲୁହାର ଗୁରୁଜ ଗୋଟା ବୁଲାଇ ହସ୍ତରେ ।
ରାମଙ୍କ ଉପରେ ତାହା ପ୍ରହାରିଲା ଦୈତ୍ୟ
ଦେଖି ପଛଘୁଞ୍ଚା ଦେଲେ ପ୍ରଭୁ ରଘୁନାଥ ।
ବାନ୍ଧିଲେ କଭୁଷ ବାଣ ଗୁଣରେ ବସାଇ
ଗୁରୁଜ କାଟିଲେ ଦୈତ୍ୟ ହସ୍ତୁଁ ରଘୁସାଇଁ ।
ଗୋଟାକ ଶାବଳ ଧରି ପିଟନ୍ତେ ଦାନବ
ଖାବଲ ଶରରେ ତାହା କାଟିଲେ ରାଘବ ।
ତହିଁପରେ ପେଶିଲେକ ପୁଣ ଅସିପତ୍ର
ସମ୍ଭାଳି ନ ପାରି ସେହି ପ୍ରତାପୀ ଦଇତ ।
ମୁହଁମାଡ ଭୂମିତଳେ ପଡ଼ିଲାକ ସହୁଁ
ବୀରବର ହନୁମନ୍ତ ବାହାରିଲା ତହୁଁ ।
ଦଇତ୍ୟ ପିଠିରେ ହନୁ ବସିଲାକ ଯାଇ
ବଜ୍ରସମ ବିଧା ଏକ ମାଇଲା ନଠାଇ ।
ଘଡ଼ିକରେ ଦୈତ୍ୟ ପୁଣି ଚେତନା ପାଇଲା
କୋପଭରେ ମାରୁତିକ ଦବାଣ୍ଡି ଧଇଲା ।
ରେ ରେକାର କରି ମାଡ଼ି ବସିଲା ଅସୁର
ମାଲ ସଙ୍ଗେ ମାଲ ଯେହ୍ନେ କରଇ ସମର ।
ଯେହ୍ନେ ଧରାଧରି ହୋଇ ପଡ଼ି ପର୍ବତରେ
ବାହୁ ବାହୁ ଛନ୍ଦା ଛନ୍ଦ ହୋଇ ବେନିବୀରେ ।
ମୁଣ୍ଡେ ମୁଣ୍ଡ ମରାମରି ହୁଅନ୍ତି ସେ ପୁଣି
ପାଦଭରେ ଦଲ ଦଲ ହୁଅଇ ମେଦିନୀ ।
ବିଧାରି ଉପରେ ବିଧା ପ୍ରହାର କରନ୍ତି
ଦୁହେଁ ପୁଣି ଘନ ଘନ ଗର୍ଜନ ଛାଡନ୍ତି ।
ପର୍ବତରୁ ଗଡ଼ିଯାଇ ସମୁଦ୍ରେ ପଡ଼ିଲେ
ଜଳମଧ୍ୟେ ଧରାଧରି ହୋଇ ଯୁଦ୍ଧ କଲେ ।
ଶ୍ରୀରାମଙ୍କୁ ଦୈତ୍ୟବଳ ଅଛନ୍ତି ବେଢ଼ିଣ
ଘୋରଯୁଦ୍ଧ କରୁଛନ୍ତି ଜାନକୀ ରମଣ ।
ବାଣାଘାତେ ନିଶାଚର ପଡ଼ିଲେ ଭୂମିରେ
ମୃତ ଶବ ଗଦା ହେଲା ପର୍ବତ ଆକାରେ ।
ପାଶୁପତ ବାଣ ବିନ୍ଧିଲାକ ରଘୁମଣି
ତିରିଶ ସହସ୍ର ମୁଣ୍ଡ ପକାଇଲେ ହାଣି ।
ଛିଣ୍ଡି ମୁଣ୍ଡମାଳ ସବୁ ପଡ଼ିଲା ଭୂମିରେ
କୁଢ଼ କୁଢ଼ହୋଇ ଦିଶେ ପର୍ବତ ଆକାରେ ।
ଉପ୍ତେ ତଣ ଛାଡ଼ି ତହୁଁ ପଳାଇଲେ ସୈନ୍ୟ
ଗୋଡ଼ାଇ ବିନ୍ଧନ୍ତି ବାଣ ଶ୍ରୀରଘୁନନ୍ଦନ ।

ହନୁକୁ ଘେନିଣ ଦୈତ୍ୟ ସମୁଦ୍ରେ ପଡ଼ିଲା
ଅସୁରକୁ ଘେନି ହନୁ ଗଗନେ ଉଡ଼ିଲା ।
ଗଗନ ମାର୍ଗରେ ଦୁହେଁ କଲେ ଘୋର ରଣ
ପର୍ବତ କନ୍ଦର ଭଙ୍ଗି ହୋଇଗଲା ଚୂର୍ଣ୍ଣ ।
ମହାବଳୀୟାର ଦୁହେଁ ସମର କରନ୍ତି
ଯେସନେକ ସିଂହ ସିଂହ ଯୁଦ୍ଧ କରୁଛନ୍ତି ।
ହସ୍ତୀ ସଙ୍ଗେ ହସ୍ତୀ ଯେହ୍ନେ କରଇ ସମର
ମହାଗୋଳ ଲଗିଲା ସେ ପର୍ବତ ଉପର ।
ହନୁକୁ ତୁଣି ଦଇତ୍ୟ ଆକ୍ରୋଷି ଧଇଲା
ପ୍ରଚଣ୍ଡ ପର୍ବତ ପରେ ନେଇ କଚାଡ଼ିଲା ।
ଅଚେତନ ହୋଇ ହନୁ ପଡ଼ିଲା ପର୍ବତେ
ରାମଙ୍କ ପାଖକୁ ଦୈତ୍ୟ ଧାଇଁଲା ତ୍ୱରିତେ ।
ଘଡ଼ିକରେ ହନୁମନ୍ତ ଚେତନା ପାଇଲା
କାହିଁଗଲୁ ଅସୁରରେ ବୋଲି ଡାକ ଦେଲା ।
ଶୁଣି ଲୁହାଗଦା ଘେନି ଅସୁର ଧାଇଁଲା
ଅରେରେ ବାନର ବୋଲି ଉଚ୍ଚେ ଡାକଦେଲା
ହନୁମାନ ଉପରେ ତା ପିଟିଲା ନଠାଇ
ଦେଖି ପକ୍ଷୀ ପଶୁ ହତ ଶୂନ୍ୟରେ ଉଡ଼ଇ ।
ବିଜୁଳି ପରାଯେ ପୁଣି ଗଗନୁ ଖସିଲା
ସପ୍ରତିଗ୍ର ଅସୁରକୁ ଚ୍ୟପୋଡ଼ା ମାଇଲା ।
ବେନିଖଣ୍ଡ କରି ଗଦା ପକାଇଲା ଭାଙ୍ଗି
ରେ ରେ କାର କରି ହନୁ ଉଠି ଗଳଗାଜି ।
କ୍ରୋଧରେ ହନୁକୁ ପୃଥ୍ୱ ଆକ୍ରୋଷି ଧଇଲା
ପ୍ରଚଣ୍ଡ ପର୍ବତ ପରେ ମାଡ଼ିଣ ବସିଲା ।
ବଜ୍ର ସମ ମୁଥ ଏକ ମାଇଲା ଅସୁର
ଘାଏ ଘୁମାଇଲା ତହିଁ କପିକୁଳ ବୀର ।
ଘଡ଼ିକ ଉତ୍ତାରେ ପୁଣି ପାଇଲା ଚେତନ
ମନେ ମନେ ଶ୍ରୀରାମଙ୍କୁ କରେ ସୁମରଣ ।
ରାମ ରାମ କହି ବେଗେ ଉଠି ହନୁବୀର
ଡେଇଁ ଯାଇଁ ବସିଲା ସେ ପର୍ବତ ଉପର ।
ଅତି କ୍ରୋଧେ ବିଶ୍ୱମୂର୍ତ୍ତି ଧରି ହନୁମାନ
ଚଉପାଶେ ଅସୁରକୁ କରେ ଅନ୍ୱେଷଣ ।
ଖୋଜି ଖୋଜି ନ ପାଇଲା ପବନର ସୁତ
ଉଚ୍ଚେ ଡାକ ଦେଲା କେଉଁଣେ ଗଲୁରେ ଦଇତ ।
କ୍ରୋଧଭରେ ଉପାଡ଼ିଲା ଏକ ଗିରିବର
ରହ ରହ ବୋଲି ଡାକ ଦେଲେ ରଘୁବୀର ।

କୋଦଣ୍ଡ ପୂରଇ ବାଣ ରଘୁକୁଳ ସାଇଁ
ଅସୁରର ଉପରକୁ ବିନ୍ଧିଲେ ଗୁହାଇ ।
ଦୈତ୍ୟହୃଦେ ପଡ଼ି ବାଣ ହୋଇଗଲା ଚୂର
ଦେଖି କ୍ରୋଧେ ଶତବାଣ ବିନ୍ଧ ରଘୁବୀର ।
ବେଗେ କାଟି ପକାଇଲେ ଦଇତ୍ୟର ମୁଣ୍ଡ
ସାତଗୋଟା ମୁଣ୍ଡ ତାର ହେଲା ଖଣ୍ଡ ଖଣ୍ଡ ।
ପ୍ରାଣ ଛାଡ଼ି ସେ ଅସୁର ଭୂମିରେ ପଡ଼ିଲା
ମରିବାର ବେଳେ ଦୈତ୍ୟ ଗର୍ଜନ ଛାଡ଼ିଲା ।
ପଳାଇଲେ ଦୈତ୍ୟବଳ ଛିନ୍ନଛନ୍ନ ହୋଇ
ସପ୍ତଶିରା ମୃତ୍ୟୁ ଦେଖି ନ ରହିଲେ କେହି ।
ଏହା ଦେଖି ଦେବଗଣେ ହରଷ ହୋଇଲେ
ଶ୍ରୀରାମଚନ୍ଦ୍ରଙ୍କ ଶିରେ ପୁଷ୍ପ ବୃଷ୍ଟି କଲେ ।
ପର୍ବତ ଉପରେ ବିଜେ କଲେ ଶୃପଧର
ଦୁଇଦିନ ଦିନରାତି ହୋଇଲା ସମର ।
ଯୁଦ୍ଧସାରି ରଘୁନାଥ ସମୁଦ୍ରେ ପଶିଲେ
ସ୍ନାନ ନିତ୍ୟକର୍ମ ସାରି ଶଉଚ ହୋଇଲେ ।
ପିତୃଙ୍କ ତର୍ପଣ ସାରି କୋଦଣ୍ଡ ଧାରଣ
ପର୍ବତ ଉପରେ ବିଜେକଲେ ରଘୁବୀଣ ।
ଫଳ ମୂଳ ଗୁଡ଼ା ଆଣି ହନୁମନ୍ତ ଦେଲା
ଭୋଜନ ସାରିଲେ ତହିଁ କଉଶଲ୍ୟା ବଳା ।
ଫଳମୂଳ ଖାଏ ହନୁ ବନସ୍ତେ ପଶିଣ
ରାତ୍ର ପ୍ରବେଶ ହୋଇଲା ଶୋଇଲେ ଶ୍ରୀରାମ ।
ରାତ୍ର ଥାଉଁ ଯୁଦ୍ଧକଥା କୁହାକୁହି ହୋନ୍ତି
ଶଯ୍ୟାରୁ ଉଠିଣ ରାମ ଶର ସଜକନ୍ତି ।

## ସହସ୍ରାରାବଣର ମନ୍ତ୍ରୀ ନିମନ୍ତେ କ୍ଷୋଭ ଓ ନାଭିଦେଶ ତ୍ୟ ଜନ୍ମ ହୋଇ ଯୁଦ୍ଧକୁ ଆଗମନ ଓ ମୃତ୍ୟୁ

ଏଥୁ ଅନନ୍ତରେ କଥା ଶୁଣ ଶାକମ୍ଭରୀ
ଆସ୍ଥାନ ଉପରେ ବିଜେ କଲେ ଦଣ୍ଡଧାରୀ ।
ଭଗ୍ନ ବଳମାନେ ଯାଇ ମିଳିଲେ ନଗରେ
ଚରର ଜଣାଇଲା ବେଗେ ନୃପତି ଛାମୁରେ ।
ହେ ଦେବ ମହିମା ଶୁଣ ବଳଙ୍କା ଈଶ୍ୱର
ସପ୍ତଶିରା ମନ୍ତ୍ରୀ ମଲା ଯୁଦ୍ଧରେ ତୋହର ।
ଅନେକ ସମର କରି ମନ୍ତ୍ରୀବର ମଲା
ରଘୁନାଥ ତାଙ୍କୁ ବାଣେ କାଟି ପକାଇଲା ।

ଏହା ଶୁଣି ନୃପତି ଯେ ପଡ଼ିଲାକ ଭୂଇଁ
ହା ହା ମନ୍ତ୍ରୀବର ବୋଲି ଡାକଇ ବୋବାଇ ।
ହା ହା ମନ୍ତ୍ରୀବର ତୁମ୍ଭେ ଜୀବନ ମୋହର
ମାରି ନ ପାରିଲୁ ରଣେ ସେ କୋଦଣ୍ଡଧର ।
ଦେବତାମାନେ ତୋ ଭୟେ ହୋନ୍ତି ଥରହର
ସାମାନ୍ୟ ମାନବ ନେଲା ପରାଣ ତୋହର ।
ମହାକ୍ଷତ୍ରୀ ହୋଇ ପୁଣି ରାମ ହସ୍ତେ ମଲୁ
ମୋତେ ଛାଡ଼ିକରି ମନ୍ତ୍ରୀ କେଣେ ଚାଲିଗଲୁ ।
କାହାକୁ ବା ଭଲମନ୍ଦ ପଚାରିବି ମୁହିଁ
କେବା ମୋତେ ଭଲମନ୍ଦ ବୁଝି ଦେବ କହି ।
ଆହା ଆହା ମନ୍ତ୍ରୀ ବୋଲି କରଇ ରୋଦନ
ଶବଦ ଶୁଭିଲା ଯାଇ ବଳଙ୍କା ଭୁବନ ।
ମନ୍ତ୍ରୀବର ବଧ ହେଲା ରାମର ହସ୍ତର
ବଳଙ୍କାର ଲୋକେ ଶୁଣି ହେଲେ ହାହାକାର
ସୁରେଖା ସୁନ୍ଦରୀ ଅଟେ ମନ୍ତ୍ରୀର ଘରଣୀ
କାନ୍ତବଧ ଶୁଣି ଉଚେ କାନ୍ଦଇ ତରୁଣୀ ।
ଦଶମାସ ଗର୍ଭେ ମୋର ଅଛଇ କୁମର
କାନ୍ତ କାନ୍ତ ବୋଲି ଉଚେ କାନ୍ଦେ ରାମାବର
ଆହେ ପ୍ରାଣନାଥ ମୋତେ କାହିଁ ଛାଡ଼ିଗଲ
ଏଡ଼େ ବଡ କ୍ଷତ୍ରୀ ହୋଇ ରାମହାତେ ମଲ ।
ଯୁବାକାଳେ ଆହେ କାନ୍ତ ହେଲି ମୁଁ ଅନାଥ
ସମ୍ଭାଳି ଯୁଦ୍ଧ ନ କଲ କିମ୍ପା ପ୍ରାଣନାଥ ।
କେଉଣ ଦେଶରୁ ସେହି ଶ୍ରୀରାମ ଅଇଲା
ତୋତେ ଯୁଦ୍ଧେମାରିମୋତେ ଅନାଥା ସେକଲା
କେ ରାମଙ୍କୁ ମାରି ଦେବ ଆଗରେ ମୋହର
କାନ୍ତକୁ ମାଇଲା ତାକୁ କରିବି ଆହାର ।
କାନ୍ତ କାନ୍ତ ବୋଲିଣ ଯେ କାନ୍ଦଇ ତରୁଣୀ
ଗର୍ଭେ ଥାଇ ପୁତ୍ର ଗୋଟି ତା ରୋଦନ ଶୁଣି
ଡାକିଲା ଗୋ ମାତ କାନ୍ଦୁ ତୁମ୍ଭେ କାହିଁପାଇଁ
ମୋ ପିତାକୁ କେ ମାଇଲା କହ ମୋତେ ତୁମ୍ଭେ
ଏହା ଶୁଣି ଅସୁରୀ ଯେ ଗର୍ଭକୁ ଚାହିଁଲା
ବୋଇଲା ତୋର ପିତାକୁ ଶ୍ରୀରାମ ମାଇଲା ।
ପୁତ୍ର ବୋଇଲା ତୁ ମୋତେ ପ୍ରସବ ଯେ କର
ମାରିବି ମୁଁ ପିତାଶତ୍ରୁ ଏ ସତ୍ୟ ମୋହର ।
ଶ୍ରୀରାମଙ୍କୁ ମାରିବି ମୁଁ ମୋତେ କର ଜନ୍ମ
ଯେଣୁ ମୋ ପିତାକୁ ବଧ କରିଛି ଶ୍ରୀରାମ ।

ଏହାଶୁଣି ଦଇତୁଣୀ ହରଷ ହୋଇଲା
ସେହିକ୍ଷଣି କୁମରକୁ ପ୍ରସବ ସେ କଲା ।
ଗର୍ଭରୁ ବାହାରି ତଳେ ପଡ଼ିଲା କୁମର
ଶରୀର ବିକାଶେ ତାର ପର୍ବତ ଆକାର ।
ଲଳେ ଜର ଜର ହୋଇ ପଡ଼ିଲା ଭୂମିରେ
ଅନ୍ତ ନାଡ଼ ଲାଗିଅଛି ତାହାର ନାଭିରେ ।
ମାତାକୁ ବୋଇଲା କହ ରାମ ଅଛି କାହିଁ
ଆଗେ ମୁହିଁ ପିତା ଶତ୍ରୁ ମାରି ଆସେ ଯାଇ ।
ସୁରେଖା ବୋଇଲା ଅଛି ପ୍ରଚଣ୍ଡ ପର୍ବତେ
କାଲି ଯୁଦ୍ଧେ ତୋ ପିତାକୁ ମାରିଲା ସ୍ୱହସ୍ତେ ।
ଯେବେ ଶ୍ରୀରାମକୁ ତୁହି ମାରିବୁ ସନ୍ତତ
ବୃଦ୍ଧିଯୁଗେ ଆରେ ପୁତ୍ର ରଖିବୁ କିରତ ।
ପୁତ୍ର ବୋଇଲା ଗୋ ମାତ ଦିଅ ମୋର ନାମ
ଭୋକ ଲାଗୁଅଛି ମୋତେ କରା କ୍ଷୀରପାନ ।
ଏହାଶୁଣି ଜନନୀ ଯେ ଧଇଲା କୋଳରେ
ବେନିସ୍ତନ ନେଇ ଦେଲା ପୁତ୍ରର ମୁଖରେ ।
କ୍ଷୀର ପାଇ ଅସୁର ଯେ ହେଲା ମହାକୋପୀ
କହୁଁ କହୁଁ ଶିରଗଲା ଗଗନକୁ ବ୍ୟାପି ।
ମାତାକୁ ବୋଇଲା ବେଗେ ଦିଅ ମୋର ନାମ
ନାଭିନାଡ଼ ଗୁଡ଼ାଇ ବାନ୍ଧେ କଟିରେଣ ।
ଏହା ଦେଖି ଜନନୀ ଯେ ହରଷ ହୋଇଲା
ସ୍ନେହେ ନାଭିଦୈତ୍ୟ ବୋଲି ନାମତାର ଦେଲା
ମାତା ପାଦତଳେ ନମସ୍କାର କଲା ଯାଇ
ବୋଇଲା କଲ୍ୟାଣ କର ଗର୍ଭଧାରୀ ମାଈ ।
ମାରିବି ରାମକୁ ଆଜ ଦିଅ ମୋତେ ବର
ଜନନୀ ବୋଇଲା ଶୁଭ ହେଉରେ କୁମର ।
ପିତା ଶତ୍ରୁ ମାରି କରି ଆସ ତୁ ବହନ
ଶୁଣି ହରଷିତ ହେଲା ନାଭିଦୈତ୍ୟ ମନ ।
ରାତ୍ର ପାହିଗଲା ଉଦେ ହେଲେ ଦିନକର
ବିଲଙ୍କାରୁ ଦଇତ୍ୟ ଯେ ହୋଇଲା ବାହାର ।
ଗଗନମାର୍ଗରେ କାୟା ବଢ଼ାଇ ଆସଇ
ମେରୁଗିରି ସମାନେ ତା ଶରୀର ଦିଶଇ ।
ଉତ୍ତରଗଡ଼ ଦୁଆରେ ହୋଇଲା ବାହାର
ଗଗନ ମାର୍ଗରେ ଉଡ଼ି ଆସଇ ସେ ବୀର ।
ଏଥୁଅନନ୍ତରେ ଦେବୀ ପାର୍ବତୀ ଗୋ ଶୁଣ
ରାତ୍ର ପ୍ରଭାତରୁ ଉଠି ପ୍ରଭୁ ରଘୁରାଣ ।

ସମୁଦ୍ରରେ ପଶି ସ୍ନାନ ନିତ୍ୟକର୍ମ କଲେ
ତର୍ପଣ ସାରିଣ ରାମ ପର୍ବତେ ବସିଲେ ।
ସ୍ୱାଦୁଫଳ ଖୋଜି ଆଣି ହନୁ ନେଇ ଦେଲା
ନିଶ୍ଚିନ୍ତେ ଭୋଜନ କଲେ କୌଶଲ୍ୟାଙ୍କ ବାଳା ।
ହନୁକୁ ବୋଲନ୍ତି ପୁଣି ପ୍ରଭୁ ରଘୁବୀର
ବିଲଙ୍କାକୁ ଚାହିଁଥାଅ ପବନ କୁମର ।
ମାୟାବୀ ଅସୁରେ ସେହି ଅଟନ୍ତି ପାମର
ନ ଜାଣି ଗୁପତେ ଆସି କରନ୍ତି ସମର ।
ଶୁଣି ବିଲଙ୍କାକୁ ଚାହିଁ ଦେଲା ହନୁମାନ
କଳା ମେଘଖଣ୍ଡ ପ୍ରାୟେ ଦିଶଇ ଗଗନ ।
ହନୁବୋଲେ ଶୂନ୍ୟେ ଦିଶେ କଳା କାହିଁପାଇଁ
ମାୟାବୀ ଅସୁର କିବା ଗୁପତେ ଆସଇ ।
ଏହାଶୁଣି ଆକାଶରୁ ଚାହିଁଲେ ଶ୍ରୀରାମ
ଅସୁରକୁ ଚିହ୍ନି ପାରି ପ୍ରଭୁ ରଘୁନାନ ।
ହନୁକୁ ବୋଇଲେ ନଷ୍ଟେ ଅଟେ ଏ ଅସୁର
ସମ୍ଭାଳି ଯୁଝିରେ ବାବୁ ପବନ କୁମର ।
ଏହାଶୁଣି ହନୁମନ୍ତ ଶୂନ୍ୟେ ଦେଲା ଚାହିଁ
ଦେଖିଲା ଏକଇ ଦୈତ୍ୟ ଗଗନେ ଆସଇ ।
କହୁଁ କହୁଁ ଅସୁର ଯେ ଶୂନ୍ୟରୁ ଖସିଲା
ପ୍ରଚଣ୍ଡ ପର୍ବତପରେ ପାଦ ବିସ୍ତାରିଲା ।
ଦେଖିଲା ପର୍ବତ ପରେ ଅଛନ୍ତି ଶ୍ରୀରାମ
ଶ୍ରୀରାମ ସନ୍ନିଧେ ଅଛି ବୀର ହନୁମାନ ।
ଦେଖି ତାଙ୍କୁ କୋପଭରେ ଗର୍ଜଇ ଅସୁର
ବୋଇଲା ପିତାଙ୍କୁ କମ୍ପା ମାଇଲୁ ମୋହର ।
ମୁହିଁ ନାଭିଦୈତ୍ୟ ସପ୍ତଶିରର କୁମର
ଆଜ ଦୁହିଁଙ୍କ ମୁଁ ପଠାଇବି ଯମଘର ।
ଶ୍ରୀରାମ ବୋଇଲେ କମ୍ପା ହେଉଛୁ ଉଚ୍ଛନ୍ନ
ପିତାସଙ୍ଗେ ଭେଟ କରାଇବି ଆଜଦିନ ।
ଏହା ଶୁଣି ସେ ଅସୁର କୋପେ ପରଜ୍ୱଳ
ରାମହନୁ ସହ ପରବତ ଦେଲା ଗିଳି ।
ଦନ୍ତେ ଉପାଡ଼ିଣ ଚୁଣ୍ଡାଇଲା ଗିରିବର
ପର୍ବତ ପଡ଼ିଲା ଯାଇ ଅସୁର ଗର୍ଭର ।
ରାମ ହନୁ ସହିତେ ତା ଗର୍ଭରେ ପଡ଼ିଲେ
ଶ୍ରବଣ ବାଟରେ ହନୁ ବାହାର ହୋଇଲେ ।
ଦେଖିଲା ଶ୍ରୀରାମଚନ୍ଦ୍ର ନାହାନ୍ତି ସେଠାରେ
ପରବତ ସହ ରାମ ଅଛନ୍ତି ଗର୍ଭରେ ।

ରାମଙ୍କୁ ନ ଦେଖି ହନୁ ବିକଳ ହୋଇଲା
ନାସାବାଟେ ପୁଣି ଦୈତ୍ୟ ଗର୍ଭରେ ପଶିଲା ।
ଗର୍ଭେ ଖୋଜି ହନୁମାନ ରାମଙ୍କୁ ପାଇଲା
ଶ୍ରବଣ ଦୁଆରେ ପୁଣି ବାହାର ହୋଇଲା ।
ଶ୍ରୀରାମଙ୍କୁ ଘେନି ହନୁ ପଡ଼ିଲା ଶୂନ୍ୟରେ
ଦରାଣ୍ଡିଇ ନାଭିଦୈତ୍ୟ ଖୋଜଇ ଭୂମିରେ ।
ବିଚାରେ ମୁଁ ରାମ ବାନରକୁ ନାଶକଲି
ପିତାର ଶତ୍ରୁକୁ ମାରି କାରଣ୍ଡ ରଖିଲି ।
ଏବେ ମୁହିଁ ସ୍ୱର୍ଗପୁର ଭାଙ୍ଗିବଇଁ ଯାଇଁ
ଦେବତାଙ୍କୁ ଆଣିବି ଯେ ଗର୍ଭରେ ପୂରାଇ ।
ଏତେବୋଲି ଦୈତ୍ୟବୀର ଉଠିଲା ଗଗନେ
ଅସୁରକୁ ଦେଖି ଭୟକଲେ ଦେବଗଣେ ।
ଡାକିଲେକ ରକ୍ଷାକର ଆହେ ରଘୁବୀର
ଆଜ ଏହି ସ୍ୱର୍ଗପୁର ଭାଙ୍ଗିଲା ଅସୁର ।
ଦେବତାମାନଙ୍କୁ ନିଶ୍ଚେ ଅସୁର ଗିଳିବ
ଯେବେ ରକ୍ଷା କରି ନପାରିବ ହେ ରାଘବ ।
ହନୁମନ୍ତ ବୋଲେ ଶୁଣ ପ୍ରଭୁ ରଘୁନାଥ
ସ୍ୱର୍ଗଭୁବନକୁ ଏବେ ଧାଇଁଲା ଦଇତ୍ୟ ।
ଏହା ଶୁଣି ଧାଇଁଲେ ସେ କୋଦଣ୍ଡ ଧାରଣ
କାୟା ବିସ୍ତାର ଅସୁର କରଇ ଗଗନ ।
ଏହାଦେଖି ରଘୁନାଥ ମହାକୋପ କଲେ
ଧନୁଧର ରାମ ସ୍ୱର୍ଗପଥ ନିରୋଧିଲେ ।
ଶର ବୃଷ୍ଟି କଲେ ଦେବ ଜାନକୀ ରମଣ
ସେ ଶର ଘୋଟିଲା ଯାଇଁ ଆକାଶ ଭୁବନ ।
ସାତତାଳ ବହଳରେ ଏକ ବନ୍ଧ ହେଲା
ପ୍ରତାପୀ ଅସୁର ବୀର ଯାଇ ନ ପାରିଲା ।
ଶର ବନ୍ଧ ଦେଖି ଦୈତ୍ୟ ମନେ ବିଚାରିଲା
କେହୁ ଆସି ଗଗନରେ ବାଟ ନିରୋଧିଲା ।
ଲେଉଟି ଗୁହାଁଲା ଦୈତ୍ୟ ଅଛନ୍ତି ଶ୍ରୀରାମ
ଧନୁ ଧରି ଅନୁକ୍ଷଣେ ବିନ୍ଧୁଛନ୍ତି ବାଣ ।
ଗଗନରେ ଉଡ଼ୁଅଛି ପବନ କୁମର
ଦେଖି ତାଙ୍କୁ ଧାଇଁଲା ସେ ପ୍ରତାପୀ ଅସୁର ।
କାୟା ବିସ୍ତାରିଲା ଦୈତ୍ୟ ସତୁରି ଯୋଜନ
ଏହାଦେଖି ଚମତ୍କାର ହେଲା ହନୁମାନ ।
ରାମ ରାମ ବୋଲି ମନେ ସୁମରଣା କଲା
ଛତିଶ ଯୋଜନ ଯାଏ କାୟା ବିସ୍ତାରିଲା ।

ଦୁଇବୀର ଶୂନ୍ୟମାର୍ଗେ ଧରାଧରି ହୋଇ
ପଡ଼ିଲେ ସମୁଦ୍ରଜଳ ମଧ୍ୟେ ବୁଡ଼ି ଯାଇ ।
ଦେଖି ରତ୍ନାକର ଭୟେ ହେଲା ଥରହର
ଡାକିଲାକ ମୋତେ ରଖ କୌଶଲ୍ୟା କୁମର ।
ବେନିବୀର ସମୁଦ୍ରର ଜଳରେ ପଡ଼ିଲେ
ଦୁହେଁ ମିଶି ଘୋରଯୁଦ୍ଧ ଜଳମଧ୍ୟେ କଲେ ।
ହନୁକୁ ଧରିଣ ସେହି ପ୍ରତାପୀ ଅସୁର
କୋଳେ ଭିଡ଼ିଧରି ବେଗେ ଉଡ଼ିଲା ଶୂନ୍ୟର ।
ରାମଚନ୍ଦ୍ର ନିକଟକୁ ଆସିଲାକ ଧାଇଁ
ଦେଖିଣ କୋଦଣ୍ଡଧର ପ୍ରଭୁ ରଘୁସାଇଁ ।
ପାଞ୍ଚଲକ୍ଷ ବାଣ କୋପେ ବିନ୍ଧିଲେ ରାଘବ
ପାଟି ବିସ୍ତାରିଣ ଗିଳିଦେଲା ସେ ଦାନବ ।
ତାହାଦେଖି କୋପକଲେ ପ୍ରଭୁ ରଘୁମଣି
ପୁଣି ସହସ୍ରେକ ବାଣ ବିନ୍ଧିଲାକ ଟାଣି ।
ଅସୁର ଉପରେ ପଡ଼ି ଶର ହେଲା ଚୂର୍ଣ୍ଣ
ପାଶୁପତ ବାଣ ପୁଣି ବିନ୍ଧିଲେ ଶ୍ରୀରାମ ।
ତିଳଗୁରୁପା ପରମାଣେ ଅଙ୍ଗେ ନ ଭେଦିଲା
ଉପୁଡ଼ିଣ ବାଣସବୁ ଭୂମିରେ ପଡ଼ିଲା ।
ଜ୍ୱାଳାବର୍ଷି ବାଣ ବିନ୍ଧିଲେକ ରଘୁବୀର
ହାବୋଡ଼ା ନାରାଚ କୋପେ କଲେକ ପ୍ରହାର
ଅସୁର ଅଙ୍ଗରେ ବାଣ ପଡ଼ିଲାକ ଯାଇଁ
ସେ ଆଘାତେ ଦୈତ୍ୟବୀର ପଡ଼ିଲା ଘୁମାଇଁ ।
ହନୁକୁ ଆକ୍ରୋଶି ବୀର ବଳେ ଧରିଥିଲା
ଉପାୟ ପାଇଣ ହନୁ ବାହାର ହୋଇଲା ।
ଅସୁର ଉପରେ ମାଡ଼ିବସେ ହନୁମନ୍ତ
ଘଡ଼ିକରେ ଚେତନା ଯେ ପାଇଲା ଦଇତ ।
ମାଡ଼ିଣ ବସିଲା ପୁଣି ହନୁକୁ ଅସୁର
ଦରାଣ୍ଡି ଧଇଲା ଅସୁରକୁ ହନୁବୀର ।
ମହାଘୋର ଯୁଦ୍ଧକଲେ ତହିଁ ବୀର ବେନି
ପଦାଘାତେ ଦଲ ଦଲ ହୋଇଲା ମେଦିନୀ ।
ଯେଉଁ ପରବତମାନେ ପାରୁଶରେ ଥିଲେ
ତାଙ୍କ ପାଦଲାଗି ସବୁ ଧୂଳି ହୋଇଗଲେ ।
ତର୍ଜନ୍ତି ଗର୍ଜନ୍ତି ଘୋରଧ୍ୱନି ଯେ କରନ୍ତି
ଦୁହିଁଙ୍କ ଗର୍ଜନ ନାଦେ କମ୍ପେ ବସୁମତୀ ।
ଦେଖିଣ ଯେ ଭୟକଲେ ରଘୁକୁଳମଣି
ଅପସରି ଆଡ଼ହୋଇ ଗଲେ ଶୂଳପାଣି ।

ବେନବୀରେ କୋପଭରେ କରନ୍ତି ସମର
ଭୟେ କମ୍ପମାନ ହେଲେ ଦେବ ସୁନାସୀର ।
ପାତାଳେ କମ୍ପିଲା ଭୟେ ବାସୁକି ଯେ ଅହି
ହସ୍ତୀ ସଙ୍ଗେ ହସ୍ତୀ ଯେସନେ ସମର କରଇ ।
ବନସ୍ତରେ ବେନିସିଂହ ଯେସନେ ଯୁଝନ୍ତି
ସେହିପରି ବେନବୀର ସମର କରନ୍ତି ।
ଦେଖିଣ ଦେବତାମାନେ ହେଲେ କମ୍ପମାନ
ଧନ୍ୟ ଧନ୍ୟ ବୀର ତୁମ୍ଭେ ଅଟ ବେନଜନ ।
ଧନ୍ୟ ଧନ୍ୟ ହନୁମନ୍ତ ବୋଲି ପ୍ରଶଂସିଲେ
ଦେବତାମାନଙ୍କ କାର୍ଯ୍ୟ କରିବୁ ବୋଇଲେ ।
ଉଭୟଙ୍କର ସମର ଲାଗିଲା ଦୁଇଦିନ
କ୍ଷଣେମାତ୍ର ସେ ଦୁହିଁଙ୍କି ନାହିଁ ଯେ ବିଶ୍ରାମ ।
ବଦନ୍ତି ଈଶ୍ୱର ଶୁଣ ଶୁଣ ଗୋ ପାର୍ବତୀ
ଦେଖିଣ ଦେବତାମାନେ କଲେ ବଡ଼ ସ୍ତୁତି ।
କୋପଭରେ ଦଇତକୁ ଧରି ହନୁବୀର
ମାଡ଼ିଣ ବସିଲା କ୍ରୋଧେ ପର୍ବତ ଉପର ।
ବାମକରେ ଗିରିକି ଉପାଡ଼ି ପକାଇଲା
ଦଇତ୍ୟକୁ ଧରିଣ ସେ ପର୍ବତେ ପୋତିଲା ।
ଅନେକ ପର୍ବତ ପୁଣି ଉପାଡ଼ିଲା ବୀର
କୋପଭରେ ଲଦିଲା ସେ ଅସୁର ଉପର ।
ନୀଳଗିରି ପାହାଡ଼କୁ ହନୁ ଯେ ଆଣିଲା
ସେ ପ୍ରତାପୀ ଦୈତ୍ୟପରେ ଆଣି କଚାଡ଼ିଲା ।
ପୁଣି ଯାଇ ହନୁମନ୍ତ ପର୍ବତ ଆଣଇ
ପାଞ୍ଚଶତ ପରବତ ମୁଣ୍ଡେ ଅଛି ବହି ।
ଲାଙ୍ଗୁଳେ ବାନ୍ଧିଛି ବୀର ଦଶଟା ପର୍ବତ
ବେନିହସ୍ତେ ଧରିଅଛି ଗିରି ଦୁଇଶତ ।
ରୁମକରେ ଗୋଟି ଗୋଟି ଖଞ୍ଜିଅଛି ସେହି
ମହାବିଶ୍ୱମୂର୍ତ୍ତି ଧରି ଗିରିଆଣେ ବହି ।
ଶ୍ରୀରାମଙ୍କୁ କନ୍ଧରେ ବସାଇ ହନୁମାନ
କାୟା ବଢ଼ାଇଛି ବୀର ଶତେକ ଯୋଜନ ।
ଗିରିତଳେ ନିଶ୍ଚିନ୍ତରେ ରହିଲା ଅସୁର
ଚଳି ନ ପାରିଲା ସପ୍ତଶିରର କୁମର ।
ଦେଖିକରି ଦେବଗଣେ କଲେ ଧନ୍ୟ ଧନ୍ୟ
ଶ୍ରୀରାମ କାର୍ଯ୍ୟକୁ ବାବୁ ତୁ ଏକା ଭାଜନ ।



## ନାଭିଦୈତ୍ୟର ମୃତ୍ୟୁ
## ସୁରେଖା ଅସୁରୀର ମାୟାରୂପଧାରଣ

ଶଙ୍କର ବୋଇଲେ ଦେବୀ ପାର୍ବତୀ ଗୋ ଶୁଣ
ଅପୂର୍ବ ଚରିତ ଏ ବିଲଙ୍କା ରାମାୟଣ ।
ବାଲ୍ମୀକି ମୁନି ଏହି ଗ୍ରନ୍ଥ କଲେ ଜାତ
ସେ ମୁନିଙ୍କ ପାଦପଦ୍ମେ ରହୁ ମୋର ଚିତ୍ତ ।
ଜୟ ଜୟ ପାର୍ବତୀର ବର ବିଶ୍ୱନାଥ
ତାହାଙ୍କ ଚରଣତଳେ ଲୋଟୁ ମୋର ମାଥ ।
ଜୟ ଶାକମ୍ଭରୀ ଜୟ ଶିବର ଘରଣୀ
ଝଙ୍କଡ଼ ବାସିନୀ ଦେବୀ ମହିଷା ମର୍ଦ୍ଦିନୀ ।
ଖେଳ କଉତୁକରେ ତୁ ପାଳୁ ଏ ସଂସାର
ଭ୍ରମିର ନାଶନ ତୋର ଜ୍ୱଳନ୍ତା କୁଠାର ।
ମୁହିଁ ସିଦ୍ଧେଶ୍ୱର ଦାସ ମୂର୍ଖ ଅପଣ୍ଡିତ
ଶ୍ରୀହିଙ୍ଗୁଳା ପରସନ୍ନେ କଲଇଁ ବ୍ୟକତ ।
ଝଙ୍କଡ଼ ବାସିନୀ ମାତ ମୋତେ ଦିଅ କହି
ତୁମ୍ଭର ଆଜ୍ଞାରେ ମୁହିଁ ବ୍ୟକତ କଲଇଁ ।
ଏହି ରାମାୟଣ ନରେ ଏକମନେ ଶୁଣ
ରାମାୟଣ ଶୁଣି ନରେ ଲଭସି କାରଣ ।
ରାମାୟଣ ଶୁଣି ନରେ ଭବୁ ହୁଅ ପାର
ରାମାୟଣ ଶୁଣି ନରେ ଦୁସ୍ତରୁ ନିସ୍ତର ।
ରାମ ରାମ ପଦଟି ଯେ ଅଟଇ ଅମୃତ
ଶୁଣି ଗୁଣି ଏହି ନାମ ପାପୁ ହୁଅ ମୁକ୍ତ ।
ରାମାୟଣ ବୃତ୍ତାନ୍ତକୁ ନିରନ୍ତରେ ଘୋଷ
ଶ୍ରୀରାମ ଚରଣେ ଭଜେ ସିଦ୍ଧେଶ୍ୱର ଦାସ ।
ଏଥୁ ଅନନ୍ତରେ ଯେ ପାର୍ବତୀ ଯୋଡ଼ିକର
ବୋଇଲେ ହେ ଶୂଳପାଣି ଏ ଭବୁଁ ନିସ୍ତାର ।
ସପ୍ତଶିର ପୁତ୍ର ପୁଣି କେଉଁ କୃତ୍ୟ କଲା
ଅନେକ ପର୍ବତେ ହନୁ ତାହାକୁ ପୋତିଲା ।
ବଦନ୍ତି ଈଶ୍ୱର ଶୁଣ ଶୁଣ ଗୋ ପାର୍ବତୀ
ପର୍ବତ ଉପରେ ମାଡ଼ି ବସିଲା ମାରୁତି ।
ତିନିଦିନ ଯାଏ ଗିରି ତଳରେ ରହିଲା
ସୁରେଖା ଅସୁରୀ ମନମଧ୍ୟେ ବିଚାରିଲା ।
ପୁତ୍ର ମୋର ରାମ ସଙ୍ଗେ ଯୁଝିବାକୁ ଗଲା
ମଲା କି ଜୀଇଲା ଅବା ରାମକୁ ମାରିଲା ।
ତାହାର ବାରତା କିଛି ନ ପାଇଲି ମୁହିଁ
ଏତେବେଳ ଅଦ୍ଧରାତେ ବାହାରିଲା ସେହି ।

ଉତ୍ତର ଦୁଆର ଦେଇ ଆସିଲା ସୁନ୍ଦରୀ
ନାଭଦୈତ୍ୟ ବୋଲି ଉଚ୍ଚେ ଡାକିଲା ଅସୁରୀ ।
ବୋଇଲାରେ ନନ୍ଦନ ତୁ କେଉଁଆଡ଼େ ଗଲୁ
କି ଅବା ଯୁଦ୍ଧରେ ରାମଚନ୍ଦ୍ରଙ୍କୁ ମାଇଲୁ ।
କି ଅବା ସେ ରାମହସ୍ତେ ମଲୁରେ କୁମର
କିଛିମାତ୍ର ନ ପାଇଲି ବାରତା ତୋହର ।
ପୁତ୍ର ପୁତ୍ର ବୋଲି ଡାକୁଛି ଉଚ୍ଚସ୍ୱରେ
ଶବଦ ଶୁଭିଲା ଯାଇ ନନ୍ଦନ କର୍ଣ୍ଣରେ ।
ମାତା ଡାକ ଶୁଣି ଶିଶୁ ଚେତନା ପାଇଲା
ଜନନୀ ଡାକୁଛି ବୋଲି ମନରେ ଜାଣିଲା ।
ଅଙ୍ଗୁଳି ହଲାଇ ଦେଲା ଛନ୍ଦ ବାଉଳାରେ
ପର୍ବତେ ପଡ଼ିଲେ ଯାଇ ବନସ୍ତ ଭିତରେ ।
ସମ୍ଭାଳି ନ ପାରି ସେହୁ ପବନର ବଳ
ପର୍ବତ ସଙ୍ଗରେ ଯାଇ ସମୁଦ୍ରେ ପଡ଼ିଲା ।
ହୁଙ୍କାର କରିଣ ଦୈତ୍ୟ ବାହାର ହୋଇଲା
କାହିଁଗଲୁ ଆରେ ରାମ ବୋଲିଣ ବୋଇଲା ।
ଦେଖିଲା ତା ପାଶେ ନାହିଁ ବୀର ହନୁମନ୍ତ
ଶ୍ରୀରାମଙ୍କ ଆଗେ ଯାଇ ମିଳିଲା ଦଇତ ।
ଖରତର ହୋଇ ଧନୁଧର ରଘୁମଣି
ପାଞ୍ଚଲକ୍ଷ ବାଣ କୋପେ ବିନ୍ଧିଲେକ ଟାଣି ।
ଅସୁର ଅଙ୍ଗରେ ପଡ଼ି ହୋଇଲେକ ଚୂର
ସାତକୋଟି ବାଣ ସେ ବିନ୍ଧିଲେ ରଘୁବୀର ।
ପାଟି ବିସ୍ତାରିଣ ତାହା ଗିଳିଦେଲା ଦୈତ୍ୟ
ଲକ୍ଷେବାଣ ବିନ୍ଧିଲେକ ପୁଣି ରଘୁନାଥ ।
ଦୁଇହାତେ ଧରି ତାହା ଭାଙ୍ଗିଲା ଅସୁର
ଦେଖି ଚମତ୍କାର ହେଲେ ପ୍ରଭୁ ରଘୁବୀର ।
ଅତ୍ୟନ୍ତ ବିସ୍ମୟ ହୋଇ ରଘୁକୁଳପତି
କି କରିବି ବୋଲି ମନେ ବିଚାର କରନ୍ତି ।
କଉସ୍ତୀ ବାଣେକ ପୁଣି ବସାଇ ଗୁଣରେ
କ୍ରୋଧଭରେ ପ୍ରହାରିଲେ ଅସୁର ଉପରେ ।
ରୁଦ୍ରଶକ୍ତି ବ୍ରହ୍ମଶକ୍ତି ବଜ୍ରଶକ୍ତି ଶର
ଜ୍ୱାଳାବଳୀ ପାଶୁପତ ପରଶୁ କୁଠାର ।
କୁନ୍ତଶୂଳ ଶଙ୍ଖ ଗଦା ମୁଦ୍‌ଗର ମାଇଲେ
ଅଗ୍ନି ଅସ୍ତ୍ର ପର୍ବତାସ୍ତ୍ର ମନ୍ତ୍ରିଣ ବିନ୍ଧିଲେ ।
ନବବାଣ ଗୁଣେ ବସାଇଣ ରଘୁମଣି
ସେ ଦଇତ୍ୟ ଉପରକୁ ବିନ୍ଧିଲେକ ଟାଣି ।
ଅସୁର ଅଙ୍ଗରେ ପଡ଼ି ସବୁ ହେଲା ଚୂର ।
ଦେଖିଣ କୋଦଣ୍ଡ ତ୍ୟାଗକଲେ ରଘୁବୀର ।
ଅତ୍ୟନ୍ତ ବିସ୍ମୟ ହୋଇ ଭାଳିଲେ ଶ୍ରୀରାମ
ଧିକ ମୋର ବଳ ବୀର୍ଯ୍ୟ ଧିକ ରାମନାମ ।
ଏକଗୋଟି ଅସୁରକୁ ଜିଣି ନ ପାରିଲି
ଏ ନଗରେ ଜୟ ନାହିଁ ନଷ୍ଟସ୍ତ ଜାଣିଲି ।
ବନବାସୀ ହେବି ମୁହିଁ ରହିବି ବନସ୍ତେ
ଦେବତାଙ୍କୁ ଦଣ୍ଡ ପଛେ ଦିଅନ୍ତୁ ଦଇତ୍ୟେ ।
ଏତେ ବୋଲି ଧନୁ ତ୍ୟାଗକଲେ ରଘୁଶିଷ୍ୟ
ଏହା ଦେଖି ଦେବତାଏ କଲେ ବଡ଼ହାସ ।
ବ୍ରହ୍ମା ଡାକଦେଲେ ଧନୁ ଛାଡ଼ କାହିଁପାଇଁ
ବ୍ରହ୍ମ ଶର ବିନ୍ଧ ନାଭି କାଟ ହେ ଗୋସାଇଁ ।
ନାଭି କାଟି ପକାଇଲେ ମରିବ ଅସୁର
ଶୁଣି ଧନୁ ଧଇଲେକ ରଘୁକୁଳ ବୀର
ସେକାଳେ ବ୍ରହ୍ମାଙ୍କୁ ସୁମରିଲେ ରଘୁପତି
ଏତେବେଳେ ଦିଅ ମୋତେ ତୁମ୍ଭ ବ୍ରହ୍ମଶକ୍ତି ।
ଏହା ଶୁଣି ବେଦପତି ଦେଲେକ ଶକତି
ପରମ ସନ୍ତୋଷ ହେଲେ ପ୍ରଭୁ ରଘୁପତି ।
କପାଳେ ଲଗାଇ ଗୁଣେ ବସାଇ ସେ ଶର
ଆକର୍ଷଣ କରି ଛାଡ଼ିଦେଲେ ରଘୁବୀର ।
ଦଇତ୍ୟ ହୃଦରେ ଯାଇ ପଡ଼ିଲା ଶକତି
ବ୍ରହ୍ମଲିଙ୍ଗ ଭେଦି ନାଭି ଛେଦିଣ ଝଟତି ।
ବେନିଖଣ୍ଡ କରି ନାଭି ପକାଇଲେ କାଟି
ଗର୍ଜିଣ ସେ ଦୈତ୍ୟବୀର ଭୂମିପରେ ଲୋଟି ।
ସମୁଦ୍ର ଭିତରେ ଯାଇ ପଡ଼ିଲା ଅସୁର
ପ୍ରାଣ ଛାଡ଼ି ପଡ଼ିଲା ସେ ପର୍ବତ ଆକାର ।
ଦେଖିଣ ଦେବତାମାନେ ହରଷ ହୋଇଲେ
ଧନ୍ୟ ଧନ୍ୟ ରାମ ବୋଲି ବହୁ ପ୍ରଶଂସିଲେ ।
ଆକାଶରୁ ପୁଷ୍ପବୃଷ୍ଟି କଲେ ଦେବଗଣ
ଅପସରା ନୃତ୍ୟ କଲେ ଆନନ୍ଦ ହୋଇଣ ।
ଅସୁରକୁ ମାରି ରାମ ପର୍ବତକୁ ଗଲେ
ଯୁଦ୍ଧ ପରିଶ୍ରମ ପାଇ ସ୍ନାହାନ ସାରିଲେ ।
ତରପଣ ସାରିଲେ ସେ କୋଦଣ୍ଡଧାରଣ
ଫଳମୂଳ ଆଣିଦେଲା ବୀର ହନୁମାନ ।
ଭୋଜନ ସାରିଣ ଶୋଇଲେ ସେ ରଘୁବୀର
ଏମନ୍ତ ସମୟେ ଶୁଣ ଆନ ସମାଚାର ।

ଶଙ୍କର ବୋଇଲେ ଦେବୀ ପାର୍ବତୀ ଗୋ ଶୁଣ
ମରିବାର ବେଳେ ଦୈତ୍ୟ କଲାକ ଗର୍ଜନ ।
ବଳଙ୍କାରେ ଥାଇ ଶବ୍ଦ ଅସୁରୀ ଶୁଣିଲା
ପୁତ୍ରମୋର ଯୁଦ୍ଧେ ମଲା ମନରେ ଜାଣିଲା ।
ଉଚ୍ଚସ୍ୱରେ କାନ୍ଦି କାନ୍ଦି ଗଲା ସେ ଅସୁରୀ
ସମର ଭୂମିରେ ଯାଇଁ ମିଳିଲା ସୁନ୍ଦରୀ ।
ପର୍ବତ ପ୍ରାୟେକ ତହିଁ ପଡ଼ିଛି ନନ୍ଦନ
ଏହା ଦେଖି ଅସୁରୀ ସେ କରଇ ରୋଦନ ।
ଆରେ ଆରେ ପୁତ୍ର ବୋଲି ପଡ଼ିଲା ଭୂମିରେ
ଦଇତ୍ୟୁଣୀ ଭୁଜ ଦୁଇ ମାରଇ ହୃଦରେ ।
ପୁତ୍ରକୁ ସେ କୋଳ କରି କରଇ ରୋଦନ
ଅନାଥ କରିଣ ମୋତେ ଗଲୁରେ ନନ୍ଦନ ।
ଅପୂର୍ବ କ କଷ୍ଟ ତୁହି କମ୍ପା ଦେଲୁ ମୋତେ
ଦଶମାସେ ଗର୍ଭେ ମୁଁ ଯେ ଧରିଥିଲି ତୋତେ
କୋଳେ ବନେ ତୋତେ ନଧଇଲିରେକୁମର
ସିଂହଛୁଆ ହୋଇ ମଲୁ ଶୃଗାଳ ହସ୍ତର ।
କ କରିବି ପୁତ୍ର କାହୁଁ ପାଇବିରେ ତୋତେ
ଅନାଥ କରିଣ ପୁତ୍ର ଛାଡ଼ିଗଲୁ ମୋତେ ।
ଅନେକ ରୋଦନ କଲା ସେହି ଦଇତ୍ୟୁଣୀ
ଦେଖିଲା ପର୍ବତ ପରେ ଛନ୍ତି ରଘୁମଣି ।
ବୋଇଲା ମୋ ପୁତ୍ରକୁ ଏ କରିଛି ସଂହାର
ଉପାୟରେ ଘେନିବି ମୁଁ ଜୀବନ ଏହାର ।
ଏମନ୍ତ ବିଚାରି ମନେ ସୁରେଖା ଅସୁରୀ
କପଟେ ହୋଇଲା ସେହି ଅପୂର୍ବ ସୁନ୍ଦରୀ ।
ସ୍ୱର୍ଗ ଅପସରୀ ପ୍ରାୟେ ଦିଶିଲା ସୁନ୍ଦର
ଅଙ୍ଗେ ଆଭରଣ କଲା ନାନା ଅଳଙ୍କାର ।
ଜୁଡ଼ାର ଉପରେ ପୁଷ୍ପ ଗଭା ସେ ଖୋସିଲା
ମଣ୍ଡଳ ଆକାରେ ବେଣୀ ଜଟାକୁ ବାନ୍ଧିଲା ।
ସୀମନ୍ତେ କୁନ୍ତଳ ଖଞ୍ଜେ କପାଳେ ସିନ୍ଦୂର
ଚନ୍ଦନ ବିନ୍ଦୁଏ ଦେଲା ତହିର ଉପର ।
ନାସାଅଗ୍ରେ ବେଶର ଯେ ବସଣୀ ଖଞ୍ଜିଲା
କର୍ଣ୍ଣରେ ତାଟଙ୍କ ପତ୍ର ଯୋଡ଼ାଏକ ଦେଲା ।
ଦୋସର ମୁକୁତା ମାଳା ଖଞ୍ଜିଲା ଗଳାରେ
ପଦକ ଲମ୍ବାଇ ଦେଲା ତହିର ଉପରେ ।
କୁଚରେ କାଞ୍ଚୁଲି ଦୃଢ଼େ କଲାକ ବନ୍ଧନ
ବାହୁରେ ଯେ ବାଜୁବନ୍ଧ ହସ୍ତରେ କଙ୍କଣ ।

ଦଶ ଅଙ୍ଗୁଷ୍ଠିରେ ଦଶ ମୁଦ୍ରିକା ଖଞ୍ଜିଲା
ସ୍ୱର୍ଣ୍ଣ୍ଣୀନ ପଡ଼ମା ଶାଢ଼ୀ ପରିଧାନ କଲା ।
ଚନ୍ଦ୍ରମେଦୀ ପାଟ ଉପରାଣ ଦେଲା ପରେ
ବାଜେଣୀ ନୂପୁର ବଳା ଖଞ୍ଜିଲା ପୟରେ ।
ରମ୍ଭା ତହୁଁ ଦୁଇଗୁଣ ଦିଶିଲା ସୁନ୍ଦର
ଅଞ୍ଚଳ ଉହାଡ଼ ଗଲେ ହୋଇ ଧୀର ଧୀର ।
ପର୍ବତ ଉପରେ ସେ ଉଠିଲାକ ଯାଇ
ଯେଉଁଠାରେ ବସିଛନ୍ତି ପ୍ରଭୁ ରଘୁସାଇଁ ।
ବୃକ୍ଷମୂଳେ ଶୋଇଛନ୍ତି ପ୍ରଭୁ ରଘୁବୀର
ହନୁମନ୍ତ ବସି ଧୀରେ ଘଷଇ ପୟର ।
ଏମନ୍ତ ସମୟେ ଯାଇ ମିଳିଲା ଅସୁରୀ
ଖଣ୍ଡେଦୂରେ ବସି ଉଚ୍ଚେ କାନ୍ଦିଲା ଚତୁରୀ ।
ଉଚ୍ଚସ୍ୱରେ କାନ୍ଦଇ ସେ ଦଇବ ସୁମରି
ବେନି ନୟନରୁ ତାର ବହେ ଅଶ୍ରୁବାରି ।
ଆହା ପିତା ଭର୍ତ୍ତା ବୋଲି କାନ୍ଦେ ଉଚ୍ଚସ୍ୱରେ
ପୁଣି କ୍ଷଣକରେ ସେହି ଦଇବ ସୁମରେ ।
ଉଠଇ ବସଇ ପୁଣି ଟଳଇ ସେ ବାଳୀ
ଗୃହବିଗେ ଅନାଇଣ ଛାଡ଼ଇ ହୋବାଳୀ ।
ଶୋଇଥିଲେ ଶ୍ରୀରାମଙ୍କ ନିଦ୍ରା ଭାଙ୍ଗିଗଲା
ଉଠି ବସିଲେକ ବେଗେ କୌଶଲ୍ୟାଙ୍କ ବଳା ।
ରୋଦନ ଶୁଭିଲା ଯାଇ ରାମଙ୍କ କର୍ଣ୍ଣର
ହନୁକୁ ଗୁହାଁଣ ବୋଇଲେକ ରଘୁବୀର ।
ବନସ୍ତ ଭିତରେ ଏକା କାନ୍ଦୁଅଛି କିଏ
ବିଚାରିଣ କାର୍ଯ୍ୟକର ପବନ ତନୟେ ।
ଏହା ଶୁଣି ଅନାଇଲା ବୀର ହନୁମାନ
ବୋଇଲା ଯେ ସ୍ତ୍ରୀ ଏକ କରୁଛି ରୋଦନ ।
ପରମାସୁନ୍ଦରୀ ସେହି ଅଟେ ସୁକୁମାରୀ
ଦେଖି ଲାଜ ପାଇଲେ ଯେ ସ୍ୱର୍ଗ ଅପସରୀ ।
ଦେଖି ତାକୁ ହନୁମନ୍ତ ବିଚାରଇ ମନେ
କାହିଁପାଇଁ କାନ୍ଦୁଅଛି ରହି ଘୋରବନେ ।
ଏ ଯୁବତୀ ରମଣୀଟି ଅଟଇ କାହାର
କେତେକାଳ ବସି ଗଢ଼ିଥିଲା ବେଦବର ।
ଏ କମ୍ପାଇ ବନସ୍ତରେ ଆସିଣ ପଶିଲା
କେଉଁଣ ଦେଶରୁ ଅବା ଏ ନାରୀ ଆଇଲା ।
ଏତେ ଭଳି ହନୁମାନ ଗଲା ଖରତରେ
ପ୍ରବେଶ ହୋଇଲା ଯାଇ ରାମଙ୍କ ଛାମୁରେ ।

ବୋଇଲେ ଦେବ ଦେବ ଶୁଣ ଆହେ ଗୃପଧାରୀ
ଅପୂର୍ବ ରମଣୀ ଏହୁ ଅତ୍ୟନ୍ତ ସୁନ୍ଦରୀ ।
ଜାନକୀ ସମାନେ ସେହୁ ଅଟଇ ସୁନ୍ଦର
ତୁମ୍ଭଙ୍କୁ ଏ ଯୋଗ୍ୟ ପ୍ରଭୁ ରଘୁକୂଳ ବୀର ।
ଆଜ୍ଞାଦେଲେ ଦରଶନ କରାଇବି ଆଣି
ଏହାଶୁଣି ହସିଲେ ସେ ପ୍ରଭୁ ଗୃପପାଣି ।
ବୋଇଲେରେ ହନୁବୀର ରଖ ତାଙ୍କୁ ତୁହି
ସେ ସ୍ତ୍ରିରୀ ଗୋଷ୍ଠାକୁ ବେଗେ ପଚ୍ଛର ତୁ ଯାଇ
ବନସ୍ତରେ ବୁଲୁଅଛି ହୋଇଣ ନରେଖ
ମନକୁ ଯୋଗାଏ ଯେବେ ହନୁ ତାଙ୍କୁ ରଖ ।
ଶୁଣି ହନୁମାନ ବୋଲେ ଯୋଡ଼ି କେନକର
ବନସ୍ତରେ ଜାତ ମୁହିଁ ଜାତିରେ ବାନର ।
ସେ ନାରୀକ ଦେବ ମୁଁ କ ଭଜନ ଅଟଇ
ଗଧ ମୁଖେ ଅମୃତର ସ୍ୱାଦ ଅବା କାହିଁ ।
ତୁମ୍ଭ ଯୋଗ୍ୟ ଅଟେ ପ୍ରଭୁ ସେ ରମଣୀବର
ଦାସୀ କର ରଖ ତାଙ୍କୁ ପ୍ରଭୁ ରଘୁବୀର ।
ଶ୍ରୀରାମ ବୋଇଲେ ହନୁ ତେମନ୍ତ ନୁହଇ
ଆମ୍ଭମାନଙ୍କର ବାବୁ ନିୟମ ଅଛଇ ।
ନିୟମ କରାଇ ଅଛି ଜନକର ଝିଅ
କୁଳ ଦୀପ ସାକ୍ଷୀ କର ଛୁଆଁଇଲି ଦେହ ।
ଯେତେଦିନ ଯାଏ ବାବୁ ଜୀବନରେ ଥିବୁ
ଜାନକୀର ବିନୁ ଅନ୍ୟ ଅଙ୍ଗ ନ ଛୁଇଁବୁ ।
ପଚ୍ଛର ତା ଜାତି ଗୋତ୍ର କାହାର ନନ୍ଦିନୀ
କାହିଁ ଯିବ ଏକା କମ୍ପା ହେଲା ସେ କାମିନୀ ।
ଏ ବନସ୍ତେ ବସି କମ୍ପା କରଇ ରୋଦନ
ବେଗେ ବୁଝିଆସ ବାବୁ ପବନ ନନ୍ଦନ ।
ଶୁଣି ହନୁମାନ ଧୀରେ ଧୀରେ ଚଳିଗଲା
ସେ ଯୁବତୀ ନିକଟରେ ପ୍ରବେଶ ହୋଇଲା ।
ପଚ୍ଛରଇ ହନୁମାନ ଶୁଣରେ ସୁନ୍ଦରୀ
ଏ ଘୋର ବନସ୍ତେ କମ୍ପା କାନ୍ଦୁରେ ଚତୁରୀ ।
କାହୁଁ ତୁ ଅଇଲୁ କହ ଯିବୁ ଅବା କାହିଁ
ଏ ଯୁବା କାଳରେ ବନେ ପଶିଲୁ କମ୍ପାଇଁ ।
କାହିଁ ବା ତୋହର ଘର କାହାର ତୁ ନାରୀ
କେବଣ ରାଜାର ହାଦେ ଅଟୁ ତୁ କୁମାରୀ ।
ଏକା ହୋଇକର କମ୍ପା ବନସ୍ତେ ପଶିଲୁ
ସତ କହ ସୁନ୍ଦରୀ ଗୋ କାହୁଁ ତୁ ଅଇଲୁ ।

ଏହା ଶୁଣି ସୁନ୍ଦରୀ ଯେ ବୋଲଇ ବଚନ
ବାବୁ ଘର ମୋର ଜାଣ ପୁଣ୍ୟ ନାମେ ବନ ।
ତାରକା ବୋଲିଣ ମୋର ଅଟଇ ଯେ ପିତା
ସୁରସେନ ବୋଲି ମୋର ଅଟେ ନିଜଭ୍ରାତା ।
ଶତ୍ରୁ ଆସି ମୋ ପିତାର ରାଜ୍ୟ ଧ୍ୱଂସ କଲା
ପିତା ମାତା ଭ୍ରାତା ମୋର ସମସ୍ତ ମାରିଲା ।
ଗୋଟିଏକ ମାତ୍ର ନ ରଖିଲା ସେ ଜୀବନେ
ତେଣୁ ଏକା ହୋଇ ମୁହିଁ ବୁଲେ ଘୋରବନେ
ସଖା ସହୋଦର ବାବୁ ମୋର କେହୁ ନାହିଁ
ଆଉ ଏକ କଥା ବାବୁ ଶୁଣ ମନ ଦେଇ ।
ଜାନକୀ ନାମରେ ଥିଲା ଜନକ ନନ୍ଦିନୀ
ପିତା ଘରେ ସଖା ହୋଇଥିଲୁ ଆମ୍ଭେ ବେନି
ଅଯୋଧ୍ୟା ଯିବାକୁ ମୁହିଁ ଖୋଜୁଅଛି ପଥ
ସଖା ସହୋଦର ନାହିଁ ନାହିଁ ମୋର ନାଥ ।
କେ ନେଇଣ ଅଯୋଧ୍ୟାରେ ମୋତେବା ଛାଡ଼ିବ
ଏତେ ବୋଲି ଉଚ୍ଚେ କାନ୍ଦେ ସୁମରି ଦଇବ ।
କହୁଁ କହୁଁ ଉଚ୍ଚସ୍ୱରେ କାନ୍ଦେ ଘନ ଘନ
ନ କାନ୍ଦ ନ କାନ୍ଦ ବୋଲି ବୋଲେ ହନୁମାନ
ଜାନକୀ ଦେବୀଙ୍କ କାନ୍ତ ଅଟନ୍ତି ଶ୍ରୀରାମ
ବିଲଙ୍କାକୁ ଆସିଛନ୍ତି ମାରିବେ ରାବଣ ।
ଏବେ ସବୁ ଚିନ୍ତା ମନୁଁ ଛାଡ଼ସି ଗୋ ମାଏ
ଅଯୋଧ୍ୟାକୁ ଘେନିଯିବେ ରଘୁକୁଳରାଏ ।
ଏହା ଶୁଣି ସେ ସୁନ୍ଦରୀ ରୋଦନ ଛାଡ଼ିଲା
ହନୁମନ୍ତ ଆଗେ ବେନି କରକୁ ଯୋଡ଼ିଲା ।
ବୋଇଲାରେ ବାବୁ ମୋତେ ଅନୁଗ୍ରହ କର
ଦର୍ଶନ କରାଅ ନେଇ ଜନକ କୁମାରୀ ।
ହନୁମାନ ବୋଲେ ତୁ ଗୋ ନୁହସି ଆରତ
ବାରତା କହେ ମୁଁ ଯାଇ ରାମଙ୍କ ଅଗ୍ରତ ।
ଏତେ କହି ହନୁମାନ ବେଗେ ଚଳିଗଲା
ଶ୍ରୀରାମ ଅଗ୍ରତେ ବେନି କରକୁ ଯୋଡ଼ିଲା ।
ବୋଇଲା ହେ ଦେବ ଆହେ ଶୁଣ ରଘୁନାଥ
ଏହି ସ୍ତ୍ରିରୀ ଗୋଟି ଅଟେ ଜାନକୀ ସଙ୍ଗାତ ।
ପୁଣ୍ୟବନେ ଏହା ଘର ଅଟେ ଏ ଅନାଥା
ଜାନକୀ ସଙ୍ଗାତ ବୋଲି ବୋଲେ ଏ ବନିତା
ଅଯୋଧ୍ୟାକୁ ଯିବାପାଇଁ ପଥ ଖୋଜେ ନାରୀ
ଏହା ଶୁଣି ଆନନ୍ଦିତ ହେଲେ ଗୃପଧାରୀ ।

ବୁଦ୍ଧିକର କାର୍ଯ୍ୟକର ପବନ ତନୟ
ଗଉରବ କର ଏହ୍ନେ ପର୍ବତେ ରଖାଅ ।
ଶୁଣିଣ ହରଷ ହେଲ ପବନ କୁମର
ଶ୍ରୀରାମଙ୍କ ପାଦପଦ୍ମେ କଲା ନମସ୍କାର ।
ସେ ସୁନ୍ଦରୀ ନିକଟକୁ ବେଗେ ଚଳିଗଲା
ଆସ ଗୋ ସୁନ୍ଦରୀ ଶ୍ରୀରାମଙ୍କ ଆଜ୍ଞାହେଲା ।
ହନୁମନ୍ତ କଥାଶୁଣି ଉଠିଲ ସୁନ୍ଦରୀ
ପର୍ବତରେ ଧୀରେ ଧୀରେ ଚଳିଲ ଅସୁରୀ ।
ଗୁମ୍ଫା ମଧ୍ୟେ ରହିଛନ୍ତି ଶ୍ରୀରଘୁନନ୍ଦନ
ଅସୁରୀକି ପର୍ବତରେ ରଖି ହନୁମାନ ।
ଫଳମୂଳ ଆଣି ତାକୁ ଖାଇବାକୁ ଦେଲା
ଆନନ୍ଦରେ ସେ ଅସୁରୀ ବସିଣ ଭୁଞ୍ଜିଲା ।

—*—

## ସୁରେଖା ହନୁମାନଙ୍କୁ ଗଳି ସହସ୍ରା ରାବଣର ପାଶରେ ଉଦ୍‌ଗାର କରିବା, ହନୁମାନ ଦ୍ୱାରା ରାଣୀମାନଙ୍କର ନାସା କର୍ଣ୍ଣ ଛେଦନ

ଏଥୁଅନ୍ତେ ଯାହା ହେଲା ଶୁଣ ଗୋ ପାର୍ବତୀ
ସନ୍ଧ୍ୟାବେଳ ଗଡ଼ିଗଲା ହୋଇଗଲା ରାତି ।
ସନ୍ଧ୍ୟା ନିତ୍ୟକର୍ମ ସାରି ସେ କୋଦଣ୍ଡଧର
ବିଶ୍ରାମ କଲେକ ଯାଇ ପର୍ବତ ଉପର ।
ପାର୍ବତୀଙ୍କୁ କହୁଛନ୍ତି ପ୍ରଭୁ ତ୍ରିଲୋଚନ
ରାତ୍ରରେ ଅସୁରୀ ବସି କରେ ଅନୁମାନ ।
କେମନ୍ତେ ରାମଙ୍କୁ ଆଜ ଗିଳିବି ଭାବିଲା
ମୋର ପୁତ୍ର କାନ୍ତକୁ ଏ ଶ୍ରୀରାମ ମାଇଲା ।
ପ୍ରଥମେ ଗିଳିବି ମୁହିଁ ହନୁମନ୍ତ ବୀର
ଏମନ୍ତ ଅସୁରୀ ମନେ କଲାକ ବିଚାର ।
ହନୁମନ୍ତ ବୀରକୁ ସେ ପାଶକୁ ଡାକିଲା
ଗୁପତ କରିଣ ସେହି ହନୁକୁ କହିଲା ।
ତୋତେ ଦେଖି କରି ବଡ଼ ଶରଧା ମୋହର
ମୋହର ସଙ୍ଗତେ ତୁହି ରସକ୍ରୀଡ଼ା କର ।
ନବଯୁବା ନାରୀ ମୁହିଁ ବଳିଲା ମୋ ଆଶ
ହନୁମନ୍ତ ବୀର ମୋତେ ନକର ନିରାଶ ।
ତୁ ମୋତେ ନିରାଶ ଯେବେ କରିବୁ ମାରୁତି
ଶାପ ମୁହିଁ ଦେବି ତୋତେ ପବନ ସନ୍ତତି ।

ଶୁଣିଣ ହନୁର ଅଙ୍ଗ କମ୍ପେ ଥରହର
ବିଲଙ୍କା ଅସୁରୀ ଏହି ଜାଣି ହନୁବୀର ।
ବୋଇଲା କୋମଳ ବାକ୍ୟେ ଶୁଣ ଗୋ ତରୁଣୀ
ସୀତା ସଙ୍ଗାତୁଣୀ ତୁମ୍ଭେ ଆମ୍ଭ ଠାକୁରାଣୀ ।
ଅନୀତି ବଚନ ତୁମ୍ଭେ କହୁଛ କେସନେ
ଶୁଣିଣ ସନ୍ଦେହ ହାଦେ ହେଉଛି ମୋ ମନେ ।
ଜାନକୀ ସଙ୍ଗାତ ନୋହୁ ଅଟୁ ତୁ ଅସୁରୀ
କପଟରେ ଆସିଅଛୁ ମାୟାରୂପ ଧରି ।
ଶୁଣିଣ ଅସୁରୀ ଅଙ୍ଗ କମ୍ପେ ଥରହର
ଜାଣିଲା ଗୁପତ କଥା ନିଶ୍ଚେ ହନୁବୀର ।
ଏତେ ଭାଳ ଦଇତୁଣୀ ପାଟି ବିସ୍ତାରିଲା
ହନୁକୁ ଧରିଲା ବଳେ ଗର୍ଭକୁ କ୍ଷେପିଲା ।
ତେତେ ବଡ଼ ବୀରକୁ ସେ ଅସୁରୀ ଗିଳିଲା
ତତ୍‌କ୍ଷଣେ ସେ ପର୍ବତରୁ ବେଗେ ପଳାଇଲା ।
ବିଲଙ୍କା ନଗରେ ଯାଇ ମିଳିଲା ଅସୁରୀ
ଯେଉଁସ୍ଥାନେ ବିଜେ କରିଛନ୍ତି ଦଣ୍ଡଧାରୀ ।
ରାଜାଙ୍କର ଆଗରେ ସେ ଅସୁରୀ ବୋଲଇ
ମୋହର କାନ୍ତକୁ ମାରିଥିଲା ରଘୁସାଇଁ ।
ଆବର ମାଇଲା ଶିଶୁ ପୁତ୍ରକୁ ମୋହର
ତୁ ରାମକୁ ମାରି ନ ପାରିଲୁ ନୃପବର ।
ମାୟାରୂପ ଧରିଣ ମୁଁ ସେଠାବକୁ ଗଲି
ହନୁମନ୍ତ ବୀରକୁ ମୁଁ ଗର୍ଭରେ ଭରିଲି ।
ଏକା ରାମ ରହିଲା ସେ ପର୍ବତ ଉପର
ପାରିଲେ ରାମଙ୍କୁ ଯାଇଁ ମାର ନୃପବର ।
ଏହାଶୁଣି ନୃପବର ହରଷ ହୋଇଲା
ହନୁମନ୍ତକୁ ତୁ ଯେବେ ଗିଳିଲୁ ବୋଇଲା ।
ଏବେ ଶ୍ରୀରାମଙ୍କୁ ମୋର କିଛି ଭୟ ନାହିଁ
କାଲି ନିଶ୍ଚେ ମାରିବଇଁ ରଘୁକୁଳ ସାଇଁ ।
ଉଦ୍‌ଗାରି ତୁ ବାନରକୁ ଦେଖା ଆଜ ମୋତେ
ବିଲଙ୍କା ରାଜ୍ୟରେ ମନ୍ତ୍ରୀ କରିବଇଁ ତୋତେ ।
ଏହାଶୁଣି ସେ ଅସୁରୀ ବେଗେ ଉଦ୍‌ଗାରିଲା
ହନୁମନ୍ତ ବୀର ତାର ଗର୍ଭରୁ ପଡ଼ିଲା ।
ଲାଳେ ଜର ଜର ହୋଇ ପଡ଼ିଲା ଭୂମିରେ
ଚେତନା ପାଇଲା ହନୁବୀର ଘଡ଼ିକରେ ।
ରାମ ରାମ ବୋଲି ମନେ ମନେ ସୁମରିଣ
ମଲା ପ୍ରାୟେ ପଡ଼ିଲା ସେ ଅଞ୍ଜନା ନନ୍ଦନ ।

ଦଇତ୍ୟ ବୋଇଲା ଏ ଯେ ଶ୍ରୀରାମର ଦୂର
ମାରିବାକୁ ଆସିଥିଲା ଲଙ୍କା ନଗର ।
ହନୁମନ୍ତ ମଲା ରାମ କେମନ୍ତେ ମରିବ
ଏଡ଼େବଡ଼ ଯଶ ମୋର କେମନ୍ତେ ହୋଇବ ।
ଏହାଶୁଣି ଯୋଦ୍ଧାମାନେ ପ୍ରତିଜ୍ଞା ସେ କଲେ
କମ୍ପାଇ ହୋଦେବ ଏତେ ଭଳୁଛ ବୋଇଲେ
ଦିଅ ବେଗେ ଆଜ୍ଞା ଦେବ ମାରିବୁ ଶ୍ରୀରାମ
ଏକା ଜଣକୁ କମ୍ପାଇ ଡରୁ ତୁ ରାଜନ ।
ଶୁଣିଣ ବିଶିରା ଦୈତ୍ୟ ସଭାରେ ବୋଲଇ
ରାମଙ୍କୁ ଇତର ତୁମ୍ଭେ ନ ମଣ ହୋ କେହି ।
ଯେ ମାରିଛି ଲଙ୍କାପୁରେ ରାବଣବା କୁମର
ବାଳକ ମଇଲା ପୁଣି ମାର ଏକ ଶର ।
ତାହାକୁ ଇତର ପ୍ରାଣେ ନ ମଣ ରାଜନ
ଅମର ଅଟଇ ଏହି ବୀର ହନୁମାନ ।
ରାଜନ ବୋଇଲେ ବେଗେ ଏଥୁ ଘେନିଯାଅ
ଭିତର ପୁରରେ ନେଇ ଏହାକୁ ପକାଅ ।
ତିରଣ ପ୍ରମାଣେ ମାଂସ ଏହାର ଯେ କାଟି
ରାଉତ ମାହୁନ୍ତ ସବୁ ଖାଅ ଏହା ବାଣ୍ଟି ।
ଏହାଶୁଣି ଅସୁରେ ଯେ ବେଗେ ଚଳିଗଲେ
ହନୁକୁ ଭିତର ପୁରେ ନେଇ ପକାଇଲେ ।
ବିଲଙ୍କା ନଗରୀ ମଧ୍ୟେ ଚହଳ ପଡ଼ିଲା
କେ ବୋଲଇ ବାବୁ ହନୁମନ୍ତ ବୀର ମଲା ।
କେ ବୋଇଲା ହନୁକୁ ଯେ ସୁରେଖା ଗିଳିଲା
କେ ବୋଇଲା ନରପତି ଗ୍ରାମୁରେ ଯେ ଦେଲା
କେ ବୋଲଇ ଚାଲ ଚାଲ ଦେଖିବା ଯେ ଯାଇ
କେ ବୋଲଇ ସେ ବାନର କେମନ୍ତ ଅଟଇ
ଏତେବୋଲି ନଗ୍ରଲୋକେ ସମସ୍ତେ ଧାଇଁଲେ
ହନୁକୁ ଦେଖିବା ପାଇଁ ଭିତରେ ପଶିଲେ ।
ରାଣୀମାନେ ଦେଖିବାକୁ ହୋଇଲେ ବାହାର
ସାତଶ ପଞ୍ଚାଶ ରାଣୀ ସେହି ରାଜାଙ୍କର ।
ଉବୁରି ଉବୁରି ହୋଇ ସମସ୍ତେ ଧାବନ୍ତି
ହନୁମନ୍ତ ଦେଖିବାକୁ ଭିତରେ ପଶନ୍ତି ।
ଦେଖିଲେ ଯେ ପଡ଼ିଅଛି ପର୍ବତ ଆକାର
କେ ବୋଲଇ ସଙ୍ଗାତ ଲୋ ଏହିଟି ବାନର
କେ ବୋଲଇ ମାରିବାକୁ ଏଥେଁ ଆସିଥିଲା
କେ ବୋଲଇ ଆମ୍ଭମାନଙ୍କର ଶତ୍ରୁ ମଲା ।

କେ ବୋଲଇ କାଟ କାଟ ମାଂସ ଏହାର
କେ ବୋଲଇ ବେଗେଯାଇ ଆଣଲୋ କୁଠାର
ଏତେବୋଲି ରାଣୀମାନେ ବେଢିଲେକ ଯାଇ
ହନୁମନ୍ତର ମାଁସ କାଟିବାର ପାଇଁ
କୁଠାର ପନିକମାନ ଧରିଲେ ହସ୍ତରେ
ହନୁକୁ ବେଢ଼ି ବସିଲେ ଚାରି ପାରୁଶରେ ।
ଏହା ଦେଖି ହନୁମନ୍ତ ଉଠିଣ ବସିଲା
ଅସୁରୀଙ୍କ ଚାହିଁଣ ଯେ ଅଳପ ହସିଲା ।
କୁଠାରକୁ ଛଡ଼ାଇଣ ଧଇଲା ହସ୍ତରେ
ଲାଙ୍ଗୁଡ଼ ଛନ୍ଦିଲା ନେଇ ସବୁରି ଅଙ୍ଗରେ ।
ଦଶବଂଶ ପାଞ୍ଚଶତ ଛନ୍ଦି ପକାଇଲା
ଲାଙ୍ଗୁଡ଼ରେ ବାନ୍ଧି ଗୋଟି ଗୋଟି କରିଡ଼ିଲା ।
କାହାକୁ ଛନ୍ଦିଣ ସେହି ଯାକିଲା କାଖରେ
କେବଣ ନାରୀର ନାକ କାଟଇ କୁଠାରେ
କାର ନାକ କଟେ ପୁଣି କାର କାଟେ ଗାଲ
କାର କୁଚ କାଟେ ସେହି ପବନର ବାଳ ।
କାହା ଚୁଟି କାଟି ତାକୁ ସାତବେଣୀ କଲା
ସବୁଙ୍କର ନାସା ହନୁ କାଟି ପକାଇଲା ।
ରାଣୀମାନଙ୍କୁ ସେ ହନୁ କଲା ଛାରଖାର
ବାଳକଙ୍କୁ କରିଡ଼ଇ ପବନ କୁମର ।
ବୃଦ୍ଧଲୋକମାନଙ୍କୁ ସେ ଧରିଣ ମାରଇ
ବାହାସ୍ଫୋଟ ଦେଇ ହନୁ ପୁରକୁ ଭାଙ୍ଗଇ ।
ଏହିପରି ଛାରଖାର କରି ଘରଦ୍ୱାର
ବିଲଙ୍କାରୁ ହନୁମନ୍ତ ହୋଇଲା ବାହାର ।
ପ୍ରଚଣ୍ଡ ଗିରିକୁ ବୋଲି ଗଲା ହନୁବୀର
ଶୁଣ ଗୋ ପାର୍ବତୀଦେବୀ ବୋଇଲେ ଶଙ୍କର
ହନୁକୁ ନ ଦେଖି ଏଣେ ଭଳନ୍ତି ଶ୍ରୀରାମ
ନ ଦେଖିଲେ ଅସୁରୀର ଯତ୍ନ ବର୍ତ୍ତିଚହ୍ନ ।
ମାୟାରୂପ ଧରି ଆସିଥିଲା ଯେ ଅସୁରୀ
ହନୁକୁ ଗିଳିଣ ଚଳିଗଲା ନିଜପୁରୀ ।
ହେ ଧର୍ମ ଦେବତା ତୁମ୍ଭେ ହନୁକୁ ଉଦ୍ଧାର
ଯେମନ୍ତ ହେ ପ୍ରମାଦ ନ ପାଉ ହନୁ ମୋର ।
ଏତେବୋଲି ରଘୁମଣି ଚାହିଁଛନ୍ତି ବାଟ
ପ୍ରବେଶ ହୋଇଲା ଯାଇଁ ଅଞ୍ଜନାର ଚାଟ ।
ପାଦତଳେ ପଡ଼ି ହନୁମନ୍ତ ଯେ ଜଣାଇ
ଅସୁରୀ ଯେ ଛଦ୍ମରେ ଆସିଲା ଗୋସାଇଁ ।

ଜାନକୀ ସଙ୍ଗାତ ସେହୁ ବୋଲଣ ବୋଇଲା
ପ୍ରୀତିରସ ମାଗି ମୋତେ କପଟେ ଗିଳିଲା ।
ବାନ୍ତ କଲା ଦଇତୁଣୀ ନୃପତି ସମ୍ମୁରେ
ମଲା ପ୍ରାୟେ ପଡ଼ିଲି ମୁଁ ଅସୁର ଆଗରେ ।
ଖାଇବେ ବୋଲଣ ମୋତେ ଭିତରକୁ ନେଲେ
କୁଠାରରେ ରାଣୀମାନେ ମୋତେ ହାଣୁଥିଲେ
ସେହି କୁଠାରକୁ ମୁହିଁ ଘେନିଲି ଛଡ଼ାଇ
ରାଣୀମାନଙ୍କର ନାସା କାଟିଲି ଗେ ସାଇଁ ।
ସ୍ତନ ସହିତେଣ ମୁହିଁ କଲଇଁ ଛେଦନ
ପଳାଇ ଅଇଲି ଦେବ ପୁଣ ରଘୁନାନ ।
ଶୁଣିକରି ରଘୁନାଥ ଆନନ୍ଦ ହୋଇଲେ
ଧନ୍ୟ ହନୁମନ୍ତ ବୋଲି ବହୁ ପ୍ରଶଂସିଲେ ।
ଏ ଘୋର ବନସ୍ତେ ମୋର ଶାଖା କେହି ନାହିଁ
ତୁହି ସିନା ମୋହର ଯେ ପ୍ରିୟବନ୍ଧୁ ଭାଇ ।
ହିନା ବରତନେ ଅଛୁ ସଙ୍ଗରେ ଗୋଡ଼ାଇ
ହନୁମନ୍ତ ବୋଲେ ଶୁଣ ପ୍ରଭୁ ରଘୁସାଇଁ ।
ମୁହିଁ ତୋର ସେବକର ଅଟଇ ସେବକ
ସୃଷ୍ଟି ସ୍ଥିତି ପ୍ରଳୟର କରତା ତୁ ଏକ ।
ତୋ ଭୃତ୍ୟର ଭୃତ୍ୟ ମୁଁ ଯେ ଅଟେ ରଘୁବୀର
ଏ ପଶୁ ଜନ୍ମରୁ ମୋତେ କରସି ଉଦ୍ଧାର ।
ସେହିଦିନ ରାତ୍ର ପାହି ହୋଇଲା ପ୍ରଭାତ
ପୂର୍ବଦିଗୁଁ ଉଦେହେଲେ ପ୍ରଭୁ ଗ୍ରହକାନ୍ତ
ସ୍ନାନ କରିବାକୁ ଉଠିଗଲେ ରଘୁନାଥ
ଫଳ ଆଣିବାକୁ ଗଲା ପବନର ସୁତ ।
ସ୍ନାନ ସାରି ରାମ ପିତୃ ତରପଣ କଲେ
ପରବତ ପରେ ବସି ଶର ସଳଖିଲେ ।

— ※ —

## କମ୍ବୁ ଦୈତ୍ୟର ମାୟାରୂପ ଧାରଣ ଶ୍ରୀରାମଙ୍କୁ ଘେନିଯିବା, ରାମଙ୍କ ଉଦ୍ଧାର ଓ ବିଲଙ୍କା ଦହନ

ଶୁଣ ଗୋ ଗଉରି ଏହି ରାମଙ୍କ ଚରିତ
ଅତିଶୟ ଗହନ ଏ ରାମାୟଣ ଗ୍ରନ୍ଥ ।
ଏ ଅପୂର୍ବ ଆଖ୍ୟାନକୁ ଯେ କରେ ଶ୍ରବଣ
ଅଥବା ଲଭଇ ସେହି ପରମ କାରଣ ।
ଜୟ ଜୟ ହିଙ୍ଗୁଳା ଗୋ ଜୟ ମାହେଶ୍ୱରୀ
ଟଙ୍କଡ଼ବାସିନୀ ତୁହି ସାକ୍ଷାତେ ଗଉରୀ ।
ସିଂହବାହିନୀ ତୁ ଘୋର ମହିଷ ମର୍ଦ୍ଦିନୀ
ଜୟ ଜୟ ଦୁର୍ଗେ ମାଗୋ ଶିବଙ୍କ ଘରଣୀ ।
ରାମାୟଣ ଗ୍ରନ୍ଥ ଅଟେ ସାମବେଦୁଁ ଜାତ
ଶୁଣି ଶୁଣାଇଲେ ନର ହୁଅଇ ମୁକତ ।
ରାମାୟଣ ଶୁଣି ନରେ ଭବୁ ହୁଅ ପାର
ରାମାୟଣ ଶୁଣି ନରେ ଦୁସ୍ତରୁ ନିସ୍ତର ।
ରାମାୟଣ ବୃତ୍ତାନ୍ତକୁ ନିରନ୍ତରେ ଘୋଷ
ରାମଙ୍କ ଚରଣେ ନିତ୍ୟେ ସିଦ୍ଧେଶ୍ୱର ଦାସ ।
ଏଥୁ ଅନନ୍ତରେ ପୁଣି ପୁଚ୍ଛନ୍ତି ପାର୍ବତୀ
ବୁଝାଇଣ କହ ମୋତେ ଦେବ ଶୂଳପତି ।
ରାଣୀଙ୍କର ନାକ କାଟି ଗଲା ହନୁମାନ
କେବଣ ବିଚାର ପୁଣ କଲକ ରାଜନ ।
ଈଶ୍ୱର ବୋଇଲେ ହନୁ ପଳାଇ ଅଇଲା
ରାଜାର ଭୁବନେ ମହାଗୋଳ ଉପୁଜିଲା ।
ଶୁଣି ଅତି କ୍ରୋଧଭରେ ବିଲଙ୍କା ରାଜନ
କୁମ୍ଭକାର ଚକ୍ର ପ୍ରାୟେ ବୁଲାଏ ନୟନ ।
ବୋଇଲା ରେ ଧରି ନ ପାରିଲ ସେ ବାନର
ଆଜ ଏ ଗଡ଼ରେ ପଶି କଲା ଛାରଖାର ।
କେ ଆଜ ରାମକୁ ମାରି ମୋତେ ଦେବ ଆଣି
କପିହସ୍ତେ ପରାଭବ ପାଇଲେ ମୋ ରାଣୀ ।
ରାଉତ ମାହନ୍ତ ସମସ୍ତଙ୍କୁ ଡକାଇଲା
କେ ରାମକୁ ଆଜ ମାରି ଦେବରେ ବୋଇଲା
ରାମ ବାନରକୁ ଆଜ ମାରିବ ଯେ ଯାଇ
ଆଜ ଏ ଗଡ଼ରେ ତାକୁ ମନ୍ତ୍ରୀ କରିବଇଁ ।
ଶୁଣିଣ ରାଉତମାନେ ହରଷ ହୋଇଲେ
ଶ୍ରୀରାମଙ୍କୁ ମାରିବାକୁ ପ୍ରତିଜ୍ଞା ସେ କଲେ ।
ଏକା ଜଣକରେ କେତେ କରିବ ସମର
ଏ ଘାନ୍ତ ଯୁଦ୍ଧରେ ନିଶ୍ଚେ କରିବା ସଂହାର ।
ଶୁଣିଣ ନୃପତି ଅତି ହରଷିତ ହେଲା
ବଗ୍ଧରୁ ବଗ୍ଧରୁ ରାନ୍ଦ ବହୁତ ହୋଇଲା ।
ଅନ୍ତଃପୁର ଭିତରକୁ ବିଜେକଲା ରାୟେ
ବିଳାସିନୀ ପରିବାରି ଝଟିଲେ ସଭିଏଁ ।
ଶ୍ରୀରାମଙ୍କ କଥା ରାଜା ବିଚାରେ ମନରେ
ଅକାରଣ ଶତ୍ରୁ ଆସି ହେଲା ମୋର ପୁରେ ।
କମ୍ବୁ ନାମେ ଏକ ଦୈତ୍ୟ ତାହାର ଭଣଜା
ପାଶକୁ ଡକାଇ ତାକୁ ବୋଲେ ମହାରାଜା ।

ମରିବ ପାରିବୁ ଉପାୟରେ ରଘୁବୀର
ଶ୍ରୀରାମଙ୍କୁ ମାଇଲେ କରିବ ମନ୍ତ୍ରୀବର ।
ଶୁଣି କମ୍ବୁ ଦୈତ୍ୟ ମନେ ହରଷିତ ହୋଇ
ବୋଇଲା ଉପାୟ କରି ମାରିବ ଗୋସାଇଁ ।
କାଲିର ଭିତରେ ନିଶ୍ଚେ ଶତ୍ରୁ ସଂହାରିବ
ଶ୍ରୀରାମ ହନୁକୁ କାଲି ଭିତରେ ମାରିବ ।
ଶୁଣି ଅତି ଆନନ୍ଦିତ ହୋଇଲା ରାଜନ
କମ୍ବୁଦୈତ୍ୟ ହସ୍ତେ ରାଜା ଦେଲା ଖିଲିପାନ ।
ଯେବେ ଆଜ ମୋତେ ମାରିଦେବୁ ରଘୁବୀର
ଲଙ୍କା କଟକେ ମନ୍ତ୍ରୀ ହୋଇବୁ କୁମର ।
ଶୁଣି କମ୍ବୁଦୈତ୍ୟ ମନେ ହରଷିତ ହୋଇ
ରାଜପ୍ରଭାତରୁ ଉଠି ଦଇତ ଚଳଇ ।
ବ୍ରହ୍ମଚାରୀ ବେଶ ଧରି ଅଇଲା ଅସୁର
ଲଙ୍କା ନଗର ମଧ୍ୟୁ ହୋଇଲା ବାହାର
ସେ ପ୍ରଚଣ୍ଡ ପର୍ବତକୁ ଦୈତ୍ୟ ଚଳିଗଲା
ଶ୍ରୀରାମଙ୍କ ସନ୍ନିଧିରେ ଯାଇଣ ମିଳିଲା ।
ଦେଖି ରଘୁନାଥ ତାକୁ ଗଉରବ କଲେ
ନମସ୍କାର କରି ଆସନରେ ବସାଇଲେ ।
କର ଯୋଡ଼ି ରଘୁନାଥ କହନ୍ତି ବଚନ
କେଉଁ ଦେଶରୁ ବିଜେକଲ ହେ ଆପଣ ।
ଅସୁର ବୋଇଲା କାଶୀକ୍ଷେତ୍ରେ ଆମ୍ଭଘର
ସାନକାଳୁ ବ୍ରହ୍ମଚାରୀ ଦୀକ୍ଷା ଯେ ଆମ୍ଭର ।
ଗଙ୍ଗା ଗୟା ବାରାଣସୀ ତୀର୍ଥ ଭ୍ରମି ଭ୍ରମି
ଚାରିଦିଗେ ବୁଲି ଆମ୍ଭେ ହେଲୁ ପଥଶ୍ରମ ।
ତୋର ଘର କହ ବାବୁ କେଉଁ ରାଜ୍ୟର
ରାଜପୁତ୍ର ପରାୟେକ ଦିଶୁଛୁ ସୁନ୍ଦର ।
ଏ ଘୋର ବନରେ ତୁମ୍ଭେ ବୁଲୁଛ କିମ୍ପାଇ ।
ଶ୍ରୀରାମ ବୋଇଲେ ଘର ଅଯୋଧ୍ୟା ଅଟଇ ।
ଦଶରଥ ରାଜା ପୁତ୍ର ରାମ ନାମ ମୋର
ନିଶ୍ଚୟ ବଧିବ ଯହିଁ ଦେଖିବ ଅସୁର ।
ଲଙ୍କା ଦେଶର ନୃପ ଅଟେ ବଳିଆର
ଏହାକୁ ମାରିବ ଇଚ୍ଛା ବଳିଛି ମୋହର ।
ଅସୁର ବୋଇଲା ତୁତ ବିଷ୍ଣୁ ଅବତାର
ଦଇତଙ୍କୁ ମାରିବାକୁ ଜନମ ତୋହର ।
ଦେବତାଙ୍କୁ ନିସ୍ତାରିଲୁ ମାରିଣ ରାବଣ
ରଖିବଟଳେ ଯଶ କୀର୍ତ୍ତି ରଖିଲୁ ଶ୍ରୀରାମ ।

ମାରି ଏହି ଦଇତକୁ ଶୁଭ ତୋର ହେଉ
ତୋହର ହସ୍ତରେ ଏହି ଦୈତ୍ୟ ନାଶ ଯାଉ ।
ଶ୍ରୀରାମ ବୋଇଲେ ମୋତେ କରନ୍ତୁ କଲ୍ୟାଣ
ଯେମନ୍ତ ଯୁଦ୍ଧରେ ମୁହିଁ ମାରଇ ରାବଣ ।
ଅସୁର ବୋଇଲା ଶୁଣ ଶୁଣ ରଘୁପତି
ଆମ୍ଭଠାରେ ଅଛି ଏକ ଅଦ୍ଭୁତ ବିଭୂତି ।
ସେ ବିଭୂତି ଲଗାଇଲେ ଯାହାର କପାଳେ
ତାକୁ ଜିଣି ପାରିବାକୁ ନାହିଁ ରିପୁଦଳେ ।
ଏହା ଶୁଣି ରଘୁନାଥ ହରଷ ହୋଇଲେ
ଅସୁର ହାତରୁ ମାୟା ବିଭୂତି ଘେନିଲେ ।
ବୀର ହନୁମନ୍ତ ଅଛି ପର୍ବତ ଉପରେ
ଫଳ ମୂଳ ଖୋଜୁଅଛି ବନସ୍ତ ଭିତରେ ।
ଶ୍ରୀରାମଙ୍କ କପାଳରେ ଦେଲା ସେ ଲଗାଇ
ଭୋଳେ ମୋହ ହୋଇଗଲେ ରଘୁକୁଳସାଇଁ
ସବୁକଥା ପାସୋରିଲେ ସେ କୋଦଣ୍ଡଧର
ଅସୁର ଧଇଲା ହସ୍ତେ ଶ୍ରୀରାମଙ୍କ କର ।
ପର୍ବତରୁ ଶ୍ରୀରାମଙ୍କୁ ଦୈତ୍ୟ ଘେନିଗଲା
ଲଙ୍କା ଭୁବନେ ଯାଇଁ ପ୍ରବେଶ ହୋଇଲା ।
ଭୋଳ ହୋଇ ରାମଚନ୍ଦ୍ର କରନ୍ତି ଗମନ
ଆସ୍ଥାନ ତଳେ ଯାଇ ମିଳିଲେ ଶ୍ରୀରାମ ।
ଆସ୍ଥାନ ଉପରେ ବସିଅଛି ଦୈତ୍ୟସାଇଁ
ଦୈତ୍ୟ ଉଭା କରାଇଲା ଶ୍ରୀରାମଙ୍କୁ ନେଇ ।
ରାକ୍ଷସ ବୋଇଲା ଏହି ଅଟେ ରଘୁବୀର
କପଟେ ଆଣିଲି ଦେଖ ଆହେ ନୃପବର ।
ଶ୍ରୀରାମଙ୍କୁ ଦେଖି ରାଜା ହରଷ ହୋଇଲା
ଧନ୍ୟରେ ଭଣଜା ମୋର ଶତ୍ରୁକୁ ଆଣିଲା ।
ଆଗୁଁ ପେଷିଥିଲେ ନ ମରନ୍ତା ମନ୍ତ୍ରୀବର
ଏବେ ଏହି ଶ୍ରୀରାମର କାଟ ବେଗେ ଶିର ।
ରାଉତ ମହନ୍ତ ପାଏକାରଙ୍କୁ ଅନାଇ
ଆଜ୍ଞାଦେଲା ଶ୍ରୀରାମର ମୁଣ୍ଡକାଟ ନେଇ ।
ଭୋଳ ହୋଇ ରାମଚନ୍ଦ୍ର ହୋଇଛନ୍ତି ଉଭା
ଧନୁଶର ପାଉଅଛି ବେନିଭୁଜେ ଶୋଭା ।
ଶସ୍ତ୍ର ଧରି ଆସ୍ଥାନରେ ମିଳିଲେ ଅସୁର
ଶ୍ରୀରାମଙ୍କୁ ମାରିବାକୁ କରନ୍ତି ବିଚାର ।
ଏହାଦେଖି ଦେବଗଣେ ଭୟରେ କମ୍ପନ୍ତି
କେଉଁ ଉପାୟ ଏବେ କରିବା ବୋଲନ୍ତି ।

ଯେବେ ନକ ଶ୍ରୀରାମଙ୍କୁ ମାରିବ ଅସୁର
ସ୍ୱର୍ଗ ପଶି ଗୋଟି ଗୋଟି କରିବ ସଂହାର ।
ଶାରଦାକୁ ଚାହିଁ ଆଜ୍ଞାଦେଲେ ବେଦବର
ଆଗୋ ମାତ ବେଗେଯାଅ ବିଲଙ୍କାନଗର ।
ଯେମନ୍ତେ ରାମଙ୍କୁ ଦୈତପତି ନ ମାରଇ
ବିଲଙ୍କାରେ ଶ୍ରୀରାମଙ୍କୁ ରକ୍ଷାକର ଯାଇ ।
ବ୍ରହ୍ମାବାକ୍ୟେ ସେ ଶାରଳାଦେବୀ ଚଳିଗଲେ
ବିଲଙ୍କା କଟକେ ଯାଇଁ ପ୍ରବେଶ ହୋଇଲେ
ସଭାଯାକ ସବୁ ମୋହ କଲେ ଦେବୀଯାଇଁ
ଶ୍ରୀରାମଙ୍କୁ ଦେଖି ସର୍ବେ ହାହାକାର ହୋଇ
କେ ବୋଲଇ ଏ ସୁନ୍ଦର ପୁରୁଷ ନ ମାର
କେ ବୋଲେ ପଶିଲା କମ୍ପା କଟକେ ଆମ୍ଭର
କେ ବୋଲେ ହୋ ଧର୍ମଦେବ ଆସି ରକ୍ଷା କର
କେ ବୋଲଇ ହେ ରାଜନ ଏହାକୁ ନମାର
ଏତେ ବୋଲି ନଗ୍ରଲୋକେ କଲେ ହାହାକାର
ଶ୍ରୀରାମଙ୍କୁ ଚାହିଁ ପୁଣି ବୋଲଇ ଅସୁର ।
ଏହା ମୁଣ୍ଡ କାଟିଲେ ତା ହେବ କେଉଁଦଶ
ଏ ସୁନ୍ଦର ପୁରୁଷକୁ ନକର ବିନାଶ ।
ମୃତ୍ୟୁଯୋଗ ଥିବାରୁ ମୋ କଟକେ ପଶିଲା
ମନ୍ତ୍ରୀକ ମୋହର ମୂର୍ଖ ପଣରେ ମାଇଲା ।
ନ ମାରିଣ ଏହାଙ୍କୁ ଯେ ରଖ ବନ୍ଦୀଘରେ
କଚ୍ଛିକାଳ ବାନ୍ଧି ରହିଥାଉ ଏ ନଗରେ ।
ଆଜ୍ଞାପାଇ ଶ୍ରୀରାମଙ୍କୁ ଦୈତ ଘେନଗଲେ
ବନ୍ଦୀଘରେ ନେଇ ତାଙ୍କୁ ବନ୍ଦୀ କରାଇଲେ ।
ଚାରିପାଶେ ସହସ୍ରକ ବୀର ଜଗୁଆଳ
ଦୁଇଲକ୍ଷ ହସ୍ତୀ ଏକୁ ଏକ ମହାବଳୀ ।
ଏଥୁ ଅନନ୍ତରେ ଦେବୀ ପାର୍ବତୀଗୋ ଶୁଣ
ପର୍ବତ ଉପରେ ରହିଥିଲା ହନୁମାନ ।
ଫଳମୂଳ ଘେନି ବୀର ବନରୁ ଅଇଲା
ଶ୍ରୀରାମ ନାହାନ୍ତି ସେହି ସ୍ଥାନରେ ଦେଖିଲା ।
ବ୍ୟସ୍ତ ହୋଇ ବୀର ଚାରି ପାରୁଶେ ଲୋଡ଼ଇ
ଦେଖିଲା ନାହାନ୍ତି ପର୍ବତରେ ରଘୁସାଇଁ ।
ଶ୍ରୀରାମ ଶ୍ରୀରାମ ବୋଲି ଡାକେ ଉଚ୍ଚସ୍ୱରେ
କେଣେ ଅଛ ରଘୁନାଥ ଦେଖାଦିଅ ବାରେ ।
ଖୋଜି ଖୋଜି ହନୁମନ୍ତ ନିରସ୍ତ ହୋଇଲା
ପର୍ବତ ଶିଖରେ ଏକ ସ୍ଥାନରେ ବସିଲା ।

ମନେ ମନେ ବିଚାରଇ ବୀର ହନୁମାନ
ମୋତେ ଛାଡ଼ି କେଣେ ଗଲ ହେ ରଘୁନନ୍ଦନ
ଆହେ ପ୍ରଭୁ କେଉଁ ଦୋଷ କରିଥିଲି ମୁହିଁ
ଛାଡ଼ିକରି ଗଲ ନାଥ ମୋତେ ତ ନ କହି ।
ପୁଣି ହନୁ ସେ ପର୍ବତ ଶିଖରେ ଖୋଜିଲା
ତହିଁ ମଧ୍ୟେ ଶ୍ରୀରାମଙ୍କୁ ଖୋଜି ନ ପାଇଲା ।
ବହୁତ ଖୋଜିଣ ତହିଁ ଅଞ୍ଜନାର ବଳା
ଶ୍ରୀରାମଙ୍କୁ ନପାଇଣ ସାହସ ଉଡ଼ିଲା ।
ହେ ରାମ ହେ ରାମ ବୋଲି ରୋଦନ କରଇ
କେଣେଗଲ ନାଥ ମୋତେ ଛାଡ଼ି ଏକାହୋଇ
ବିଚାରଇ ରାମ ପର୍ବତରେ ବସିଥିଲେ
ଏହିକ୍ଷଣି ଥିଲେ କେଉଁ ଦେଶେ ଚାଲିଗଲେ ।
କିବା ଅଯୋଧ୍ୟାକୁ ଚାଲିଗଲେ ରଘୁବୀର
କିଅବା ପଶିଲେ ରାମ ବିଲଙ୍କା ଭିତର ।
କାହିଁ ଯିବି ଶ୍ରୀରାମଙ୍କୁ କାହିଁବା ଖୋଜିବି
କାହାର ମୁଖରୁ ମୁହିଁ ସନ୍ଦେଶ ପାଇବି ।
ଏମନ୍ତ ଭାଳଇ ମନେ ମନେ ବୀରମଣି
ଏ ସମୟେ ଆକାଶରୁ ହେଲା ଦୈବବାଣୀ ।
କି ଚିନ୍ତା କରୁଛ ବସି ପବନ କୁମର
ରାମଙ୍କୁ କପଟେ ଘେନି ଗଲେଣି ଅସୁର ।
ବିଲଙ୍କାରୁ ଶ୍ରୀରାମଙ୍କୁ ବନ୍ଦୀ କଲେ ନେଇ
ରାମଙ୍କୁ ଉଦ୍ଧାର କର ଏଥୁଁ ବେଗେ ଯାଇ ।
ଦେବକାର୍ଯ୍ୟ କର ବାବୁ ବିଳମ୍ବ ନକର
ଚମତ୍କାର ହେଲା ଶୁଣି ପବନ କୁମର ।
ଆକୁଳ ହୋଇଣ ହନୁ ମନେ ବିଚାରଇ
ଶ୍ରୀରାମଙ୍କୁ ଛାଡ଼ିକରି ଗଲି ମୁଁ କମ୍ପାଇଁ ।
ପୋଡ଼ୁ ପୋଡ଼ୁ ମୋର ଏ ଜୀବନେ କାର୍ଯ୍ୟନାହିଁ
କେମନ୍ତେ ଭେଟିବି ଆଜ ଶ୍ରୀରାମଙ୍କୁ ମୁହିଁ ।
ବିଲଙ୍କା ନପଡ଼ି ତାଙ୍କୁ ଲୁଚାଇଲା କାହିଁ
ସ୍ୱର୍ଗ ମର୍ତ୍ତ୍ୟ ପତାଳେ କି ରଖିଅଛି ସେହି ।
ଏତେ ଭାଳି ଅତି ଦୁଃଖେ ପବନ କୁମର
ବିଲଙ୍କା ପୁରକୁ ବୀର ହୋଇଲା ବାହାର ।
ବାଟରେ ବ୍ରାହ୍ମଣ ବେଶ ଧରି ହନୁମାନ
ଧୀରେ ଧୀରେ ବିଲଙ୍କାକୁ କରଇ ଗମନ ।
ଅତ୍ୟନ୍ତ ଦରିଦ୍ର ଦେହ ଦିଶେ ଅସୁନ୍ଦର
ଶିଆରେ ପଚିଲା ବାଳ ଉଡ଼େ ଭରଫର

ଭଙ୍ଗା ଛତା ଖଣ୍ଡେ ଘେନଅଛି ବୀରମଣି
ବେନ ପାରୁଶରେ ଝୁଲୁଅଛି ଭିକ୍ଷାମୁଣି ।
ବଲଙ୍କା ଭିତରେ ହନୁ ପଶିଲେକ ଯାଇଁ
ଘରେ ଘରେ ଭିକ୍ଷାମାଗି ରାମଙ୍କୁ ଖୋଜଇ ।
ଘରେକ ନଛାଡ଼ି ବୀର ବଲଙ୍କା ନଗରେ
ଶ୍ରୀରାମଙ୍କୁ ଖୋଜଇ ସେ ନିର୍ଭୟ ଚିତ୍ତରେ ।
ଅସୁର ଅସୁରୀମାନେ ହୋନ୍ତି କୁହାକୁହି
ଏ ପୁରୁଷ ଗୋଟି ଏଥେଁ ଅଇଲା କମ୍ପାଇ ।
କେ ବୋଲଇ ମାରୁ ମାରୁ ନୃପତି ରଖିଲା
କେ ବୋଲଇ ଏ କଟକେ କମ୍ପାଇ ପଶିଲା ।
ଏହା ଶୁଣି ହନୁମନ୍ତ ତାଙ୍କୁ ପଚାରଇ
ସେ ଦୁଷ୍ଟ ଶ୍ରୀରାମ ରୂପ କେମନ୍ତେ ଦିଶଇ ।
କେଉଁଠାରେ ଅଛି ସେହି ଦେଖିବା ତାହାକୁ
କମ୍ପାଇ ରଖିଛି ରାଜା ନମାରି ରାମଙ୍କୁ ।
ଏ ନଗରେ ଗୋଟାଲୁ ସେ ହାଲହୋଲ କଲା
ବନ୍ଦୀରେ ପଡ଼ିଲା ଏବେ ନଷ୍ଟପ୍ରାୟ ସେ ମଲା ।
କାହିଁ କେଉଁଠାରେ ଅଛି ପୁଣି ପଚାରଇ
ଗଡ଼ର ଭିତର ଲୋକେ ତାକୁ ଦେଲେ କହି
ଶୁଣି ବୀର ହନୁମନ୍ତ ପଶିଲା ଭିତରେ
ଦେଖିଲା ନୃପତି ବସିଅଛି ଆସ୍ଥାନରେ ।
ସେଠାରେ ଅସୁର ବଳ ପୂର୍ଣ୍ଣ ହୋଇଛନ୍ତି
ଶ୍ରୀରାମଙ୍କ କଥା ବସି ବିଚାର କରନ୍ତି ।
ବ୍ରାହ୍ମଣ ବେଶରେ ସବୁ ଶୁଣିଲା ମାରୁତି
ମନେ ବିଚାରିଲା ଏଥେଁ ଛନ୍ତି ରଘୁପତି ।
ତହୁଁ ପୁଣି ହନୁମନ୍ତ ଭିତରକୁ ଗଲା
ନୃପତିର ରାଣୀହଂସ ପୁରରେ ପଶିଲା ।
ଶ୍ରୀରାମଙ୍କୁ ଖୋଜଇ ସେ ପଶି କପଟରେ
ହନୁମନ୍ତ ଭିକ୍ଷା ମାଗୁଅଛି ଘରେ ଘରେ ।
ବଲଙ୍କା ନଗରେ ସବୁ ଖୋଜି ଖୋଜି ଗଲା
ଶ୍ରୀରାମଙ୍କ ବନ୍ଦୀଘରେ ପ୍ରବେଶ ହୋଇଲା ।
ଦେଖିଲା ଅସୁରଛନ୍ତି ଘେରି ପାରୁଶରେ
ବିଜେ କରିଛନ୍ତି ରାମ ତାହାଙ୍କ ମଧ୍ୟରେ ।
ଅସୁରଙ୍କ ସନ୍ନିଧାନେ ମିଳି କପିରାଣ
ସକଳ ଦୈତ୍ୟଙ୍କୁ ବୀର କରଇ କଲ୍ୟାଣ ।
ଓସୁରେ ବୋଇଲେ କାହୁଁ ଅଇଲହେଦ୍ୱିଜ
କଲ୍ୟାଣ କରନ୍ତୁ ବେଗେ ମରୁ ରଘୁରାଜ ।

ଶୁଣି ହନୁମନ୍ତ ଦେଲା ପଛକୁ ଅନାଇଁ
ଦେଖିଲା ଅଛନ୍ତି ତହିଁ ରଘୁକୁଳ ସାଇଁ ।
ବିଭୂତି ଲଗିଛି ଶ୍ରୀରାମଙ୍କ କପାଳରେ
ଏହାଦେଖି ହନୁମନ୍ତ ମନରେ ବିଚାରେ ।
ଧନ୍ୟରେ ଅସୁରେ ଧରି ଆଣିଲ ଶ୍ରୀରାମ
ଏହିକ୍ଷଣି ତୁମ୍ଭେମାନେ ହୋଇବ ନିଧନ ।
ଧନ୍ୟ ଧନ୍ୟ ରଘୁନାଥ କୌଶଲ୍ୟାର ବଳା
ଦୈତ୍ୟଙ୍କ ମାୟାରେ ପଡ଼ି ହେଲ ମତିଭୋଳା
କେମନ୍ତେ ମୁଁ ଶ୍ରୀରାମଙ୍କୁ କରିବି ଉଦ୍ଧାର
ଅସୁରଙ୍କୁ ଚାହିଁ ପୁଣି ବୋଲେ ହନୁବୀର ।
ଏହି ପରା ଆମ୍ଭ ମନ୍ତ୍ରୀକି ମାରିଲା
ଏହି କଟକରେ ପରା ଉପଦ୍ରବ କଲା ।
ଏତେକହି ଶ୍ରୀରାମଙ୍କ ଅଙ୍ଗେ ମାରି କର
ବୋଇଲା ଅସୁର ହାତେ ମରିବୁରେ ବୀର ।
ଶ୍ରୀରାମଚନ୍ଦ୍ରଙ୍କ ଶିରେ ଥିଲା ଯେ ବିଭୂତି
କପଟରେ ପୋଛି ପକାଇଲା ତା ମାରୁତି ।
ଯହୁଁ ବିଭୂତିକ ପୋଛି ପକାଇଲା ବୀର
ଚେତନା ପାଇଲେ ପ୍ରଭୁ ରଘୁକୁଳ ବର ।
ଦେଖିଲେକ ଏ ଅସୁର ଭୁବନ ଅଟଇ
ବନ୍ଦୀଘରେ ଦେଖି ଚମତ୍କାର ରଘୁସାଇଁ ।
କାହିଁ ପରବତ କାହିଁ ହନୁମନ୍ତ ବୀର
ମୁହିଁ ରହିଅଛି ଆସି ଅସୁର ମନ୍ଦିର ।
ଏତେ ଭାଳି ଶ୍ରୀରାମ ଯେ କୋଦଣ୍ଡ ଧଇଲେ
ସୂକ୍ଷ୍ମକ୍ଷଣ ନାରାଚ ଧନୁ ଗୁଣେ ପୂରାଇଲେ ।
ବିନ୍ଧିଲେକ ସେ ନାରାଚ କୋପେ ରଘୁବୀର
ରକ୍ଷାକଲା ଲୋକଙ୍କର କାଟିଲେକ ଶିର ।
ଯେତେକ ଅସୁର ଶ୍ରୀରାମଙ୍କୁ ଜଗିଥିଲେ
ଏକା ବାଣକରେ ରାମ କାଟି ପକାଇଲେ ।
ଉବୁରା ଯେତେକ ଆଉ ଥିଲେକ ଅସୁର
ମୁଣ୍ଡ ଧରି ମୋଡ଼ିଲା ସେ ପବନ କୁମର ।
ରାମଙ୍କୁ ବୋଇଲା ତୁମ୍ଭେ ଏତେ କର୍ମ କଲ
ଏ ମାୟାବୀ ଅସୁରଙ୍କ ମାୟାରେ ପଡ଼ିଲ ।
ଏତେବୋଲି ଶ୍ରୀରାମଙ୍କୁ ପିଠିରେ ବସାଇ
ବଲଙ୍କାରୁ ହନୁମନ୍ତ ବାହାର ହୁଅଇ ।
ମହାଗୋଳ ଜାତହେଲା ବଲଙ୍କା ନଗରେ
ବାନର ପଳାଏ ଘେନ ରାମଙ୍କୁ ସଙ୍ଗରେ ।

ଏହାଶୁଣି ବେଗେ ଧାଏଁ ନୃପତ୍ତି ନନ୍ଦନ
ଦୁଇଶତ ଭୁଜେ ଧନୁ ଧରିଣ ବହନ ।
ରେ ରେକାର କରି ଆଗେ ମିଳିଲେକ ଆସି
ଧନୁ ଧରି କରି ଶର ବନ୍ଧଇ ଆକର୍ଷି ।
ଲକ୍ଷ ଲକ୍ଷ ବାଣ ବନ୍ଧେ ନୃପତ୍ତି କୁମର
ଗ୍ରୀରପାଖେ ବେଢ଼ିଗଲେ ଶଲଙ୍କା ଅସୁର ।
ବାରସହସ୍ର ଘେନ ସୈନ୍ୟ ଆସେ କୁମ୍ଭାସୁର
ପାଞ୍ଚକୋଟି ସୈନ୍ୟ ଘେନ ଆସେ ନୃପବର ।
ବତିଶ ସହସ୍ର ଗ୍ରୀରଲକ୍ଷ ଦଣ୍ଡଛନ
ଚଉଦସହସ୍ର ଏକଲକ୍ଷ ପାଠଛନ ।
ବାଟ ଓଗାଳିଲା ଯାଇଁ ଶଲଙ୍କା ଈଶ୍ୱର
ଆଜ୍ଞାଦେଲେ ଶ୍ରୀରାମଙ୍କୁ ବେଗେଯାଇ ମାର
ଶୁଣିଣ ରାଉତମାନେ ତ୍ୱରିତେ ଧାଇଁଲେ
ଶ୍ରୀରାମଙ୍କ ଉପରକୁ ଭୁହାଇ ବନ୍ଧିଲେ ।
ହନୁକୁ କହିଲେ ଦେବ ରଘୁକୁଳ ବୀର
ଏହିସ୍ଥାନେ ରହି ଆମ୍ଭେ କରିବା ସମର ।
ଶୁଣି ହନୁମନ୍ତ ତହିଁ ରହେ ସ୍ଥିରହୋଇ
ପଦଗାମୀ ହୋଇଣ ସେ ରଘୁକୁଳ ସାଇଁ ।
ଧନୁଗୁଣେ ତୀକ୍ଷଣବାଣ ଯୋଚି ରଘୁବୀର
ଅସୁରଙ୍କ ଉପରକୁ କରନ୍ତି ପ୍ରହାର ।
ଯେତେ ଛନଧର ଥିଲେ ରାମଙ୍କୁ ବେଢ଼ିଲେ
ମଧ୍ୟେ ରହି ରଘୁନାଥ ଅଦୃଶ୍ୟ ହୋଇଲେ ।
କ୍ରୋଧରେ କଭୁଷି ବାଣ ବନ୍ଧି ରଘୁମଣି
ଯେତେ ଛନ ଥିଲା ସବୁ ପକାଇଲେ ହାଣି ।
କମ୍ବୁ ଦୈତ୍ୟ ଓଗାଳିଲା ଶ୍ରୀରାମଙ୍କୁ ଯାଇଁ
ଦ୍ୱାଦଶ ସହସ୍ର ଶର ବନ୍ଧିଲା ନଠାଇ ।
ତିନବାଣେ ରାମ ସବୁ କାଟି ପକାଇଲେ
ପାଞ୍ଚବାଣେ ପୁଣି ତାର ଧନୁକୁ କାଟିଲେ ।
ଜ୍ୱଳାବଳୀ ବାଣ ବନ୍ଧି ପ୍ରଭୁ ରଘୁବୀର
ବେନଖଣ୍ଡ କରି କାଟି ପକାଇଲେ ଶିର ।
ମୁଣ୍ଡ ଛିଣ୍ଡି ମହୀପରେ ପଡ଼ିଲା ଦଇତ୍ୟ
ଶତଶିର ଧଇଁଲେକ ଘେନି ଅସିପତ୍ର ।
ଦୁଇଶତ ଭୁଜେ ଧନୁ ଆକର୍ଷି ଧାଇଁଲା
ଏକାବେଳେ ସେ ଦଇତ୍ୟ ବାଣ ବୃଷ୍ଟି କଲା
ଜ୍ୱଳାବଳୀ ବାଣ ପୁଣି ବନ୍ଧି ରଘୁବୀର
ବାଣାଘାତେ ମେଦିନୀକି କଲେ ଅନ୍ଧକାର ।

ସଂଗ୍ରାମ ଭୂମିରେ ଯେତେ ବୀରଗଣ ଥିଲେ
ପର କି ଆପଣା ବୋଲି ବାରି ନପାରିଲେ ।
ଆପଣା ଆପଣା ମଧ୍ୟେ ହଣାହଣି ହୋନ୍ତି
କୁଢ଼କୁଢ଼ ହୋଇ ଦୈତ୍ୟ ସମରେ ପଡ଼ନ୍ତି ।
ମୃତ୍ୟୁଶବ ପଡ଼ିଲେକ ପର୍ବତ ଆକାର
ଶଲଙ୍କା ଦାଣ୍ଡରେ ବହିଗଲା ରକ୍ତଧାର ।
ଶ୍ରୀରାମଙ୍କ ସଙ୍ଗେ ହନୁମନ୍ତ ବୀର ଥିଲା
ଶତଶିର ଆଗରେ ସେ ଯାଇଣ ମିଳିଲା ।
ଧାଇଁଯାଇଁ ହନୁମନ୍ତ କନ୍ଧରେ ବସଇ
ବଜ୍ରବଧା ଗୋଟାଏ ପ୍ରହାର କଲା ନେଇ ।
ଘଡ଼ିଏକ ଅଚେତନ ଅସୁର ହୋଇଲା
ହନୁମନ୍ତ ଉପରକୁ ବାଣେକ ବନ୍ଧିଲା ।
ବଜ୍ରସମ ବାଣଗୋଟା ବନ୍ଧିଲା ଅସୁର
ତାର ତେଜେ ନୂନ୍ୟ ହେଲେ ଦେବ ଦିବାକର
ହନୁମନ୍ତ ଉପରକୁ ଆସନ୍ତେ ସେ ଧାଇଁ
ଦୁଇହାତେ ଧଇଲା ତା କପିକୁଳ ସାଇଁ ।
ଫିଙ୍ଗିଦେଲା ପଡ଼ିଲା ସେ ଅସୁର ଉପରେ
ପକ୍ଷୀ ପ୍ରାୟେ ହନୁମାନ ଉଡ଼ିଲା ଶୂନ୍ୟରେ ।
କପାଳରୁ ବ୍ରହ୍ମଅଗ୍ନି ଜାତକଲା ବୀର
ସେ ଅନଳେ ପୋଡ଼ିଦେଲା ଶଲଙ୍କା ନଗର
ଏ ସମୟେ ପବନାସ୍ତ୍ର ବନ୍ଧିଲେ ଶ୍ରୀରାମ
ଅଣ୍ଟଗୃଣ ମୂର୍ତ୍ତି ଧରି ବହିଲା ପବନ ।
ପବନ ସହାୟେ ପାଇ ଅନଳ ଜଳିଲା
ଶଲଙ୍କା ନଗରଯାକ ସକଳ ଦହିଲା ।
ଉଆସ ପାଚେରି ଅଟ୍ଟାଳିକା ଯେ ଜଗତି
ଦେଉଳ ମଣ୍ଡପ ଅଗଣାର ଚଉକତି ।
ରାଣୀହଂସ ପୁରେ ଅଗ୍ନି ଲଗିଲେକ ଯାଇ
ପ୍ରବଳ ଅନଳ ଶିଖା ଗଗନେ ଉଠଇ ।
ଦେଖିଣ ସହସ୍ରଶିର ନୃପତି ଧାଇଁଲା
ରଥରେ ସକଳ କୁଟୁମ୍ବିକୁ ପୂରାଇଲା ।
ଗଗନ ମାର୍ଗରେ ରଥ ରଖିଲା ସେ ନେଇ
ହନୁମାନ ଶ୍ରୀରାମଙ୍କୁ ପିଠିରେ ବସାଇ ।
ଦୁଇହାତେ ଅଗ୍ନି ଧରି ପବନ କୁମର
ଶଲଙ୍କା ନଗରପ୍ରେଡ଼ କଲା ଛାରଖାର ।
ସେ ନଗର ମଧ୍ୟେ ଯେତେ ଘରଦ୍ୱାର ଥିଲା
ସବୁଘରେ ହନୁମନ୍ତ ଅଗ୍ନି ଲଗାଇଲା ।

ବଲଙ୍କାର ଗୃହପାଖେ ବେଢ଼ାଇ ଲାଙ୍ଗୁଳ
ଗୋଟିଏକ ନ ଛାଡ଼ିଲା ଅଞ୍ଜନାର ବାଳ ।
ସ୍ତ୍ରୀ ପୁରୁଷ କେହ୍ନ ତହୁଁ ଯାଇ ନପାରିଲେ
ଅଗ୍ନି ମଧ୍ୟେ ପଡ଼ି ଛଟପଟ ହୋଇ ମଲେ ।
ଅନଳ ଭିତରେ ପଶି ହନୁମନ୍ତ ବୀର
ଅସୁରଙ୍କ ସଙ୍ଗତରେ କରଇ ସମର ।
ମହାଗୋଳ ଲଗାଇଲା ବଲଙ୍କା ଦେଶରେ
ମଲୁ ମଲୁ ବୋଲି ଶବ୍ଦ ଶୁଭେ ନିରନ୍ତରେ ।
କେ ବୋଲଇ ଆଲୋ ବାପ କେ ବୋଲଇ ଭାଇ
କେ ବୋଲଇ ଏବେ ବାପ ପୋଡ଼ିମଲି ମୁହିଁ
କେହୁ ପଳାଇ ନ ପାରି ଅଗ୍ନିରେ ପଡ଼ିଲା
ଧନଲୋଭୀ ହୋଇ କେହ୍ନ ଅବା ପୋଡ଼ିମଲା ।
କେ ପୁତ୍ରକୁ ଲୋଭ କରି ଭିତରେ ପଶିଲା
ପୁତ୍ର ମଲା ଆପେ ମଲା ଆସି ନପାରିଲା ।
ଅନେକ ଅସୁର ପୋଡ଼ିମଲେ ବଲଙ୍କାରେ
ଶ୍ରୀରାମଙ୍କୁ ଘେନି ହନୁ ଉଡ଼ଇ ଶୂନ୍ୟରେ ।
ପର୍ବତ ଉପରେ ବୀର ମିଳିଲାକ ଯାଇ
ବଲଙ୍କାରେ ଘରେ ଘରେ ଲାଗିଅଛି ଜୁଇ ।
ରଥଘେନି ନରପତି ଗଗନେ ରହିଲା
ଢେଡ଼େବଡ଼ ନଗରକୁ ଅନଳ ଦହିଲା ।
ଦେଉଳ ମଣ୍ଡପ ସବୁ ହେଲା ଭସ୍ମସାତ
ଦେଖି ନରପତି ମାରେ କପାଳରେ ହାତ ।
କ୍ରୋଧେ ଥରହର ହୋଇ କମ୍ପେ ତା ଶରୀର
ଦେବତାଙ୍କୁ ଚାହିଁ କୋପ କଲାକ ଅସୁର ।
ଆଜ ମୁହିଁ ଦେବତାଙ୍କୁ ନିଶ୍ଚୟ ମାରିବି
ଗୋଟିଗୋଟି ଧରି ଅଗ୍ନି ମଧ୍ୟେ ପକାଇବି ।
ଶୁଣି ଦେବଗଣ ଭୟେ ହେଲେ ଥରହର
ମେଘକୁ ଡକାଇ ଆଜ୍ଞା ଦେଲେ ସୁନାସୀର ।
ଜଳ ବରଷିଣ ଅଗ୍ନି ଲିଭାଅ ବହନ
ନହେଲେ ଭାଙ୍ଗିବ ନିଶ୍ଚୟ ଏ ସ୍ୱର୍ଗଭୁବନ ।
ଶୁଣି ମେଘମାନେ ଘୋର ଗରଜନ କଲେ
ବଲଙ୍କା ନଗର ମଧ୍ୟେ ଜଳ ବରଷିଲେ ।
ଲିଭିଲା ବହନ ଅଗ୍ନି ଶୀତଳ ହୋଇଲା
ବଲଙ୍କାରେ ନରପତି ନିଶ୍ୱାସ ଛାଡ଼ିଲା ।
ଦେବତାଏ ଯାଇ ମିଳି ତାରି ଅଗ୍ରତରେ
କରଯୋଡ଼ି ଜଣାଇଲେ ଭୟେ ଥରଥରେ ।

ତୁ ଦେବ ଆମ୍ଭଙ୍କୁ କୋପ କରୁଛୁ କାହାଇଁ ।
ଆମ୍ଭ କେଉଁ ଦୋଷ କଲୁ କହ ଦୈତ୍ୟସାଇଁ ।
ଶ୍ରୀରାମଙ୍କୁ ମାରିବାକୁ କରୁଛୁ ବିଚାର
ସମସ୍ତେ ମିଳିଣ ଚାଲ କରିବା ସମର ।
ରାଜା ବୋଲେ ଶୁଣ ଆହେ ସର୍ବଦେବଗଣ
ଶ୍ରୀରାମଙ୍କୁ ମାରି ତୁମ୍ଭେ ରଖ ମୋରପଣ ।
ଦେବତା ବୋଇଲେ ରାଜା ଭୟ କାହାକରି
କାଲି ଯୁଦ୍ଧେ ମାରିଦେବୁ ଆମ୍ଭେ ରଘୁବୀର ।
ଶୁଣିଣ ବଲଙ୍କାପତି ହରଷ ହୋଇଲା
ଗଜଦନ୍ତ ପଲଙ୍କରେ ଯାଇଁ ପହୁଡ଼ିଲା ।
ତହୁଁ ସର୍ବ ଦେବଗଣ ଗଲେ ସ୍ୱର୍ଗପୁର
ବଲଙ୍କା ନିମନ୍ତେ ବସି କରନ୍ତି ବିଚାର ।
ଆଜ ବଡ଼ ବଇରାଗ ପାଇଲା ରାଜନ
କାଳନିକ ଆସି କୋପେ ମାରେ ଦେବଗଣ
ବିଶ୍ୱକର୍ମା ଯାଇ ଆଜ୍ଞା ଦେଲେ ବେଦବର
ଏହି ରାତ୍ରି ମଧ୍ୟେ ଯାଇଁ ବଲଙ୍କା ନଗର ।
ପୂର୍ବହୁଁ ଦ୍ୱିଗୁଣ ପ୍ରତି ଘର ନିର୍ମାଣିବୁ
ଆସ୍ଥାନମାନ ସବୁ ସୁବର୍ଣ୍ଣେ ଛାଇବୁ ।
ଏହାଶୁଣି ବିଶ୍ୱକର୍ମା ବେଗେ ଚଳିଗଲା
ସେହି ରାତ୍ରେ ଯାଇଁ ନଗ୍ର ଭିତରେ ପଶିଲା ।
କେହି ନଜାଣନ୍ତି ନିଶବଦେ ଶୋଇଛନ୍ତି
ବିଶ୍ୱକର୍ମା ଯାଇ ପୁର ନିର୍ମାଣ କରନ୍ତି ।
ହୀରାମାଳା ସୁବର୍ଣ୍ଣରେ ନିର୍ମାଣିଲା ପୁର
ଅଶ୍ୱଶାଳ ଗଜଶାଳ ହାଟ ସେ ବଜାର ।
ପାଇକମାନଙ୍କ ପୁର ମନ୍ତ୍ରୀଙ୍କ ଉଆସ
ସୁବର୍ଣ୍ଣ ଖଞ୍ଜିଲା ରାଜାପୁର ଚଉପାଶ ।
ମାଣିକ୍ୟର ଛାଉଣୀ ଯେ ବଇଡ଼ୂର୍ଯ୍ୟ ବତା
ଉପରେ ଛାଏଣି ସବୁ କଲାକ ମୁକୁତା ।
ମାଣିକ୍ୟ ଗୋଟାଏ କାହିଁ ମୁକୁତା ଗୋଟାଏ
ହୀରାମାଳା ଲଗିଛନ୍ତି ଥୋପାଏ ଥୋପାଏ ।
ପୂର୍ବହୁଁ ଦ୍ୱିଗୁଣ କରି ପୁର ନିର୍ମାଣିଲା
ପ୍ରଭାତରେ ବିଶ୍ୱକର୍ମା ସ୍ୱର୍ଗପୁର ଗଲା ।

—×—

ଏହାଶୁଣି ବେଗେ ଧାଏଁ ନୃପତ୍ତି ନନ୍ଦନ
ଦୁଇଶତ ଭୁଜେ ଧନୁ ଧରିଣ ବହନ ।
ରେ ରେକାର କରି ଆଗେ ମିଳିଲେକ ଆସି
ଧନୁ ଧରି କରି ଶର ବିନ୍ଧଇ ଆକର୍ଷି ।
ଲକ୍ଷ ଲକ୍ଷ ବାଣ ବିନ୍ଧେ ନୃପତ୍ତି କୁମର
ଶ୍ରୀରାମଙ୍କୁ ବେଢ଼ିଗଲେ ବିଲଙ୍କା ଅସୁର ।
ବାରସହସ୍ର ଯେନ ସୈନ୍ୟ ଆସେ କୁମ୍ଭାସୁର
ପାଞ୍ଚକୋଟି ସୈନ୍ୟ ଯେନ ଆସେ ନୃପବର ।
ବତିଶ ସହସ୍ର ଶ୍ରୀରାଲକ୍ଷ ଦଣ୍ଡଛତ୍ର
ଚଉଦସହସ୍ର ଏକଲକ୍ଷ ପାଟଛତ୍ର ।
ବାଟ ଓଗାଳିଲା ଯାଇଁ ବିଲଙ୍କା ଈଶ୍ୱର
ଆଜ୍ଞାଦେଲେ ଶ୍ରୀରାମଙ୍କୁ ବେଗେଯାଇ ମାର
ଶୁଣିଣ ରାଉତମାନେ ତୁରିତେ ଧାଇଁଲେ
ଶ୍ରୀରାମଙ୍କ ଉପରକୁ ତୁହାଇ ବିନ୍ଧିଲେ ।
ହନୁକୁ କହିଲେ ଦେବ ରଘୁକୁଳ ବୀର
ଏଥିସ୍ଥାନେ ରହି ଆମ୍ଭେ କରିବା ସମର ।
ଶୁଣି ହନୁମନ୍ତ ତହିଁ ରହେ ସ୍ଥିରହୋଇ
ପଦଗାମୀ ହୋଇଣ ସେ ରଘୁକୁଳ ସାଇଁ ।
ଧନୁଗୁଣେ ତୀକ୍ଷ୍ଣବାଣ ଯୋଗି ରଘୁବୀର
ଅସୁରଙ୍କ ଉପରକୁ କରନ୍ତି ପ୍ରହାର ।
ଯେତେ ଛତ୍ରଧର ଥିଲେ ରାମଙ୍କୁ ବେଢ଼ିଲେ
ମଧ୍ୟେ ରହି ରଘୁନାଥ ଅଦୃଶ୍ୟ ହୋଇଲେ ।
କ୍ରୋଧରେ କାଲୁଷି ବାଣ ବିନ୍ଧି ରଘୁମଣି
ଯେତେ ଛତ୍ର ଥିଲା ସବୁ ପକାଇଲେ ହାଣି ।
କମ୍ବୁ ଦୈତ୍ୟ ଓଗାଳିଲା ଶ୍ରୀରାମଙ୍କୁ ଯାଇଁ
ଦ୍ୱାଦଶ ସହସ୍ର ଶର ବିନ୍ଧିଲା କଠାଇ ।
ତିନବାଣେ ରାମ ସବୁ କାଟି ପକାଇଲେ
ପାଞ୍ଚବାଣେ ପୁଣି ତାର ଧନୁକୁ କାଟିଲେ ।
ଜ୍ୱାଳାବଳୀ ବାଣ ବିନ୍ଧି ପ୍ରଭୁ ରଘୁବୀର
ବେନଖଣ୍ଡ କରି କାଟି ପକାଇଲେ ଶିର ।
ମୁଣ୍ଡ ଛିଣ୍ଡି ମହୀପରେ ପଡ଼ିଲା ଦଇତ୍ୟ
ଶତଶିରା ଧାଇଁଲେକ ଯେନ ଅସିପତ୍ର ।
ଦୁଇଶତ ଭୁଜେ ଧନୁ ଆକର୍ଷି ଧାଇଁଲା
ଏକାବେଳେ ସେ ଦଇତ୍ୟ ବାଣ ବୃଷ୍ଟି କଲା
ଜ୍ୱାଳାବଳୀ ବାଣ ପୁଣି ବିନ୍ଧି ରଘୁବୀର
ବାଣାଘାତେ ମେଦିନୀକି କଲେ ଅନ୍ଧକାର ।

ସଂଗ୍ରାମ ଭୂମିରେ ଯେତେ ବୀରଗଣ ଥିଲେ
ପର କି ଆପଣା ବୋଲି ବାରି ନପାରିଲେ ।
ଆପଣା ଆପଣା ମଧ୍ୟେ ହଣାହଣି ହୋନ୍ତି
କୁଢ଼କୁଢ଼ ହୋଇ ଦୈତ୍ୟ ସମରେ ପଡ଼ନ୍ତି ।
ମୃତ୍ୟୁଶବ ପଡ଼ିଲେକ ପର୍ବତ ଆକାର
ବିଲଙ୍କା ଦାଣ୍ଡରେ ବହିଗଲା ରକ୍ତଧାର ।
ଶ୍ରୀରାମଙ୍କ ସଙ୍ଗେ ହନୁମନ୍ତ ବୀର ଥିଲା
ଶତଶିରା ଆଗରେ ସେ ଯାଇଣ ମିଳିଲା ।
ଧାଇଁଯାଇଁ ହନୁମନ୍ତ କନ୍ଧରେ ବସଇ
ବଜ୍ରବିଧା ଗୋଟାଏ ପ୍ରହାର କଲା ନେଇ ।
ଘଡ଼ିଏକ ଅଚେତନ ଅସୁର ହୋଇଲା
ହନୁମନ୍ତ ଉପରକୁ ବାଣେକ ବିନ୍ଧିଲା ।
ବଜ୍ରସମ ବାଣଗୋଟା ବିନ୍ଧିଲା ଅସୁର
ତାର ତେଜେ ନୃମ୍ୟଦେଲେ ଦେବ ଦିବାକର
ହନୁମନ୍ତ ଉପରକୁ ଆମନ୍ତ୍ରେ ସେ ଧାଇଁ
ଦୁଇହାତେ ଧରିଲା ତା କପିକୁଳ ସାଇଁ ।
ଫିଙ୍ଗିଦେଲା ପଡ଼ିଲା ସେ ଅସୁର ଉପରେ
ମୂର୍ଚ୍ଛା ପ୍ରାପ୍ତ ହନୁମାନ ଉଡ଼ିଲା ଶୂନ୍ୟରେ ।
କପାଳରୁ ବ୍ରହ୍ମଅଗ୍ନି ଜାତକଲା ବୀର
ସେ ଅନଳେ ପୋଡ଼ିଦେଲା ବିଲଙ୍କା ନଗର
ଏ ସମୟେ ପବନାସ୍ତ୍ର ବିନ୍ଧିଲେ ଶ୍ରୀରାମ
ଅଗ୍ନିରୂପ ମୂର୍ତ୍ତି ଧରି ବହିଲା ପବନ ।
ପବନ ସହାୟ ପାଇ ଅନଳ ଜଳିଲା
ବିଲଙ୍କା ନଗରସାକ ସକଳ ଦହିଲା ।
ଉଆସ ପାଚେରି ଅଟ୍ଟାଳିକା ଯେ ଜଗତି
ଦେଉଳ ମଣ୍ଡପ ଅଗଣାର ଚଉକତି ।
ରାଣୀହଂସ ପୁରେ ଅଗ୍ନି ଲାଗିଲେକ ଯାଇ
ପ୍ରବଳ ଅନଳ ଶିଖା ଗଗନେ ଉଠଇ ।
ଦେଖିଣ ସହସ୍ରଶିରା ନୃପତ୍ତି ଧାଇଁଲା
ରଥରେ ସକଳ କୁଟୁମ୍ବକୁ ପୂରାଇଲା ।
ଗଗନ ମାର୍ଗରେ ରଥ ରଖିଲା ସେ ନେଇ
ହନୁମାନ ଶ୍ରୀରାମଙ୍କୁ ପିଠିରେ ବସାଇ ।
ଦୁଇହାତେ ଅଗ୍ନି ଧରି ପବନ କୁମର
ବିଲଙ୍କା ନଗରପେଡ଼ି କଲା ଛାରଖାର ।
ସେ ନଗର ମଧ୍ୟେ ଯେତେ ଘରଦ୍ୱାର ଥିଲା
ସବୁଘରେ ହନୁମନ୍ତ ଅଗ୍ନି ଲଗାଇଲା ।

ବିଲଙ୍କାର ଗୃହପାଖେ ବେଢ଼ାଇ ଲାଙ୍ଗୁଳ
ଗୋଟିଏକ ନ ଛାଡ଼ିଲା ଅଞ୍ଜନାର ବାଳ ।
ସ୍ତ୍ରୀ ପୁରୁଷ କେହି ତହୁଁ ଯାଇ ନପାରିଲେ
ଅଗ୍ନି ମଧ୍ୟେ ପଡ଼ି ଛଟପଟ ହୋଇ ମଲେ ।
ଅନଳ ଭିତରେ ପଶି ହନୁମନ୍ତ ବୀର
ଅସୁରଙ୍କ ସଙ୍ଗତରେ କରଇ ସମର ।
ମହାଗୋଳ ଲଗାଇଲା ବିଲଙ୍କା ଦେଶରେ
ମଲୁ ମଲୁ ବୋଲି ଶବ୍ଦ ଶୁଭେ ନିରନ୍ତରେ ।
କେ ବୋଲଇ ଆଲୋବାପ କେ ବୋଲଇ ଭାଇ
କେ ବୋଲଇ ଏବେ ବାପ ପୋଡ଼ିମଲି ମୁହିଁ
କେହୁ ପଳାଇ ନ ପାରି ଅଗ୍ନିରେ ପଡ଼ିଲା
ଧନଲୋଭୀ ହୋଇ କେହି ଅବା ପୋଡ଼ିମଲା ।
କେ ପୁତ୍ରକୁ ଲୋଭ କରି ଭିତରେ ପଶିଲା
ପୁତ୍ର ମଲା ଆପେ ମଲା ଆସି ନପାରିଲା ।
ଅନେକ ଅସୁର ପୋଡ଼ିମଲେ ବିଲଙ୍କାରେ
ଶ୍ରୀରାମଙ୍କୁ ଘେନି ହନୁ ଉଡ଼ଇ ଶୂନ୍ୟରେ ।
ପର୍ବତ ଉପରେ ବୀର ମିଳିଲାକ ଯାଇ
ବିଲଙ୍କାରେ ଘରେ ଘରେ ଲାଗିଅଛି ଜୁଇ ।
ରଥଘେନି ନରପତି ଗଗନେ ରହିଲା
ତେଡ଼େବଡ଼ ନଗରକୁ ଅନଳ ଦହିଲା ।
ଦେଉଳ ମଣ୍ଡପ ସବୁ ହେଲା ଭସ୍ମସାତ
ଦେଖି ନରପତି ମାରେ କପାଳରେ ହାତ ।
କ୍ରୋଧେ ଥରହର ହୋଇ କମ୍ପେ ତା ଶରୀର
ଦେବତାଙ୍କୁ ଚାହିଁ କୋପ କଲାକ ଅସୁର ।
ଆଜ ମୁହିଁ ଦେବତାଙ୍କୁ ନିଶ୍ଚୟ ମାରିବି
ଗୋଟିଗୋଟି ଧରି ଅଗ୍ନି ମଧ୍ୟେ ପକାଇବି ।
ଶୁଣି ଦେବଗଣ ଭୟେ ହେଲେ ଥରହର
ମେଘଙ୍କୁ ଡକାଇ ଆଜ୍ଞା ଦେଲେ ସୁନାସୀର ।
ଜଳ ବରଷିଣ ଅଗ୍ନି ଲିଭାଅବହନ
ନହେଲେ ଭାଙ୍ଗିବ ନିଶ୍ଚୟ ଏ ସ୍ୱର୍ଗଭୁବନ ।
ଶୁଣି ମେଘମାନେ ଘୋର ଗରଜନ କଲେ
ବିଲଙ୍କା ନଗର ମଧ୍ୟେ ଜଳ ବରଷିଲେ ।
ଲିଭିଲା ବହନ ଅଗ୍ନି ଶୀତଳ ହୋଇଲା
ବିଲଙ୍କାରେ ନରପତି ନିଶ୍ୱାସ ଛାଡ଼ିଲା ।
ଦେବତାଏ ଯାଇ ମିଳି ତାର ଅଗ୍ରତରେ
କରଯୋଡ଼ି ଜଣାଇଲେ ଭୟେ ଥରଥରେ ।
ତୁ ଦେବ ଆମ୍ଭଙ୍କୁ କୋପ କରୁଛୁ କମ୍ପାଇଁ ।
ଆମ୍ଭେ କେଉଁଦୋଷ କଲୁ କହ ଦୈତ୍ୟସାଇଁ ।
ଶ୍ରୀରାମଙ୍କୁ ମାରିବାକୁ କରୁଛୁ ବିଚାର
ସମସ୍ତେ ମିଳିଣ ଚାଲ କରିବା ସମର ।
ରାଜା ବୋଲେ ଶୁଣ ଆହେ ସର୍ବଦେବଗଣ
ଶ୍ରୀରାମଙ୍କୁ ମାରି ତୁମ୍ଭେ ରଖ ମୋରପଣ ।
ଦେବତା ବୋଇଲେ ରାଜା ଭୟ କମ୍ପାକର
କାଲି ଯୁଦ୍ଧେ ମାରିଦେବୁ ଆମ୍ଭେ ରଘୁବୀର ।
ଶୁଣିଣ ବିଲଙ୍କାପତି ହରଷ ହୋଇଲା
ଗଜଦନ୍ତ ପଲଙ୍କରେ ଯାଇଁ ପହୁଡ଼ିଲା ।
ତହୁଁ ସର୍ବ ଦେବଗଣ ଗଲେ ସ୍ୱର୍ଗପୁର
ବିଲଙ୍କା ନିମନ୍ତେ ବସି କରନ୍ତି ବିଚାର ।
ଆଜ ବଡ଼ ବଇରାଗ ପାଇଲା ରାଜନ
କାଲିନିକ ଆସି କୋପେ ମାରେ ଦେବଗଣ
ବିଶ୍ୱକର୍ମା ରାଇ ଆଜ୍ଞାଦେଲେ ବେଦବର
ଏହି ରାତ୍ରି ମଧ୍ୟେ ଯାଇଁ ବିଲଙ୍କା ନଗର ।
ପୂର୍ବହୁଁ ଦ୍ୱିଗୁଣ ପ୍ରତି ଘର ନିର୍ମାଣିବୁ
ଆୟତନମାନ ସବୁ ସୁବର୍ଣ୍ଣେ ଛାଇବୁ ।
ଏହାଶୁଣି ବିଶ୍ୱକର୍ମା ବେଗେ ଚାଲିଗଲା
ସେହି ରାତେ ଯାଇଁ ନଗ୍ର ଭିତରେ ପଶିଲା ।
କେହି ନଜାଣନ୍ତି ନିଶବଦେ ଶୋଇଛନ୍ତି
ବିଶ୍ୱକର୍ମା ଯାଇ ପୁର ନିର୍ମାଣ କରନ୍ତି ।
ହୀରାମାଳା ସୁବର୍ଣ୍ଣରେ ନିର୍ମାଣିଲା ପୁର
ଅଶ୍ୱଶାଳ ଗଜଶାଳ ହାଟ ଯେ ବଜାର ।
ପାଇକମାନଙ୍କ ପୁର ମନ୍ତ୍ରୀଙ୍କ ଉଆସ
ସୁବର୍ଣ୍ଣ ଖଞ୍ଜିଲା ରାଜାପୁର ଚଉପାଶ ।
ମାଣିକ୍ୟର ଛାଉଣୀ ଯେ ବଇଡ଼ୂର୍ଯ୍ୟ ବତା
ଉପରେ ଛାଏଣି ସବୁ କଲାକ ମୁକୁତା ।
ମାଣିକ୍ୟ ଗୋଟାଏ କାହିଁ ମୁକୁତା ଗୋଟାଏ
ହୀରାମାଳା ଲାଗିଛନ୍ତି ଥୋପାଏ ଥୋପାଏ ।
ପୂର୍ବହୁଁ ଦ୍ୱିଗୁଣ କରି ପୁର ନିର୍ମାଣିଲା
ପ୍ରଭାତରେ ବିଶ୍ୱକର୍ମା ସ୍ୱର୍ଗପୁର ଗଲା ।

— x —

## ଦେବଗଣଙ୍କର ରାମଙ୍କୁ ବିଜୟୀ ରଥ ପ୍ରଦାନ, ବିଶିରା ଫେରି ଆସିବା

ଈଶ୍ୱର କହନ୍ତି ଶୁଣ ଶୁଣ ଗୋ ପାର୍ବତୀ
ବେଗେ ପ୍ରଭାତରୁ ଉଠି ଦେଖି ନରପତି ।
ଦେଉଳ ମଣ୍ଡପ ସବୁ ଦିଶଇ ଯତନ
ପୂର୍ବହୁଁ ବିଲଙ୍କାପୁର ଦିଶେ ଶୋଭବନ ।
ଦେଖିଣ ରାଜନ ମନେ ହରଷ ହୋଇଲା
ନିତ୍ୟକର୍ମ ସାରି ଆସ୍ଥାନରେ ବିଜେକଲା ।
ସାନଭାଇ ବିଶିରାକୁ ଚାହିଁଣ ବୋଇଲା
ଶ୍ରୀରାମକୁ ମାରି ଏବେ ନ କର ତୁ ହେଳା ।
ବିଶିରା ବୋଇଲା ଏବେ ଶୁଣ ନୃପବର
ରାମକୁ ଇତର ନ ମଣ ହେ ଦଣ୍ଡଧର ।
ରାମେ ବାଦୀ ହେଲେ ନଷ୍ଟେ ଯାଇବା ମରଣ
ଶ୍ରୀରାମର ପାଦେ ଚାଲ ପଶିବା ଶରଣ ।
ରାଜା ବୋଲୁଛନ୍ତି ତୁହି ହୋଇଲୁ କି ବାଇ
ବଇରୀକି ମାରିବାକୁ ଡରିଲୁ କିମ୍ପାଇ ।
ଯେବେ ଜୀବନକୁ ଭୟ ହୋଇଲା ତୋହର
ଶରଣ ପଶ ତୁ ଯାଇଁ ଶ୍ରୀରାମ ପାଦର ।
ବିଭୀଷଣ ବୀର ଯାଇଁ ଶରଣ ପଶିଲା
ଚାରିଯୁଗ ଯାଏ ସେହି ଅମର ହୋଇଲା ।
ମୋତେ ଏବେ ବୀର୍ଯ୍ୟହୀନ ନ କରରେ ଭାଇ
ରାମର ଶରଣ ଏହିକ୍ଷଣି ପଶ ଯାଇ ।
ଶୁଣିଣ ବିଶିରା କ୍ରୋଧେ ହୁଏ ଥରହର
ନୃପତି ମୁଖକୁ ଚାହିଁ ବୋଲଇ ଉତ୍ତର ।
କିମ୍ପାଇଁ ମୋହର ବୋଲ ଭାଙ୍ଗୁଛ ରାଜନ
ଧର୍ମକର୍ମ ବିଚାରନ୍ତୁ ଅନ୍ନେ ନୃପଗଣ ।
ରାଜନ ବୋଇଲା ମୁହିଁ କରୁଛି ନିସୃତ
ଅବଶ୍ୟ ଯୁଦ୍ଧରେ ମୁଁ ମାରିବି ରଘୁନାଥ ।
ଶ୍ରୀରାମକୁ ନ ମାଇଲେ ଅବଶ୍ୟ ମରିବି
ଏ ଚାରିଯୁଗରେ ମୁହିଁ କୀରତି ରଖିବି ।
ତୁ ଯାଇ ଶରଣ ପଛେ ପଶ ବୀରବର
ସୈନ୍ୟ ସାଜ ତହିଁ ମୁହିଁ କରିବି ସମର ।
ଏହାଶୁଣି ବିଶିରା ଯେ ହୋଇଲା ମଉନ
ତସହୁଁ ବୋଇଲା ଆଜ ସଜ ମୋର ସୈନ୍ୟ
ଯୁଦ୍ଧ କରି ଆଜ ରାମ ହସ୍ତେରେ ମରିବି
ଏ ଚାରି ଯୁଗରେ ମୁହିଁ କୀରତି ରଖିବି ।
କ୍ଷତ୍ରୀ ପୁତ୍ର ହୋଇ କିମ୍ପା ଡରିବି ଯୁଦ୍ଧକୁ
ସୈନ୍ୟ ସଜକର ଆଜ୍ଞା ଦେଲା ଉଗରକୁ ।
ଆଜ୍ଞା ପରମାଣେ ତହୁଁ ଉଗରେ ଚଳିଲେ
ବିଲଙ୍କା ନଗରେ ପଶି ସୈନ୍ୟଙ୍କୁ ରାଇଲେ ।
ସଜ ସାଜ ବୋଲି ତହୁଁ ଚହଳ ପଡ଼ିଲା
ବାଦ୍ୟନାଦ ଶବଦରେ ପୃଥ୍ୱୀ ଚମକିଲା ।
ରାଉତ ମାହୁନ୍ତ ଆଦି ବୀର ମହାବୀର
ଅଶ୍ୱରଥ ପଦାତିକ ଆବର କୁଞ୍ଜର ।
ବାଦ୍ୟକାର ପଏଦାର ସେନା ସେନାପତି ।
ହସ୍ତେ ଶସ୍ତ୍ରମାନ ଧରି ବାହାର ହୁଅନ୍ତି ।
ଗରଜନ କରି ଧାଉଁଛନ୍ତି ବୀରମଣି
ଦଲ ଦଲ ହୋଇ କମ୍ପେ ବିଲଙ୍କା ମେଦିନୀ ।
ଶ୍ୱାନ ବାହାନରେ ବସି ହୋଇଲେ ବାହାର
ମାର୍ଜାର ବାହାନେ ବସି ଧାଇଁଲେ ଅସୁର ।
ଅଶ୍ୱପରେ ଗଜପରେ ରାଉତ ମହୁନ୍ତ
ବିଲଙ୍କାରୁ ବାହାରିଲେ ବାରଲକ୍ଷ ରଥ ।
କେଉଁ ଅସୁରର ଶିର ଆକାଶେ ଲାଗଇ
କାହାର ଲୋଚନ ଦୁଇ ପିଙ୍ଗଳ ଦିଶଇ ।
କେ କଳା କେ ଧଳା କେ ଦିଶଇ ରଙ୍ଗବର୍ଣ୍ଣ
ସୁବର୍ଣ୍ଣ ମୁକୁଟ ଶିରେ ଦିଶେ ଶୋଭବନ ।
କେ ଆଗରେ କେ ପଛରେ ନେତ ବାନ୍ଧିଅଛି
କର୍ଣ୍ଣରେ କୁଣ୍ଡଳ ବାନ୍ଧେ ବାଜୁ ବିରାଜୁଛି ।
କାର ଦୁଇହାତ ବଡ଼ ନିଶ ଅତି ମୋଟ
ଲୁଖୁରା ବାଳରେ କେହି ପାରିଅଛି ଜଟ ।
ଦେହେ ଲୋମ ବାରହାତ ଅଟଇ କାହାର
ଦମ ଦମ ହୋଇ ଧାଏଁ କେ ଧରି ମୁଦ୍‌ଗର
ଚରାମାରି ଉପରକୁ ଡେଇଁ କରି ଯାନ୍ତି
କାହିଁ ରାମ ବୋଲି କେହି ଗର୍ଜନ କରନ୍ତି ।
ଝଣ ଝଣ ଶବ୍ଦକରେ ଅସ୍ତ୍ର ବା କାହାର
କାଇ ଫରିଖଣ୍ଡା ଯାଇ ଲାଗେ ଗଗନର ।
କେ ଖଡ଼ଗ କେହୁ ଫାଳ ଧରିଣ ଧାମନ୍ତି
କେହୁ ଯାଇ ନୃପତିଙ୍କ ଦର୍ଶନ କରନ୍ତି ।
କେ ବୋଲନ୍ତି ଆସ ଆସ କେ ବୋଲନ୍ତି ଯାଅ
ବିଲଙ୍କା ନଗରେ ଶବ୍ଦ ଶୁଭେ ଗହ ଗହ ।

କେ ବୋଲନ୍ତ ସଙ୍ଗାତହୋ କେବୋଲଇ ଭାଇ
କେ ବୋଲୁ ଅଛନ୍ତ ଯୁଦ୍ଧ କରିବାକ ଯାଇ
କେ ବୋଲଇ ଶ୍ରୀରାମଙ୍କୁ ଇତର ନ ମଣ
କେ ବୋଲଇ ଏହି ମାରି ଅଛନ୍ତି ରାବଣ ।
କେ ବୋଲଇ ଆମ୍ଭ ରାଜା ମନ୍ତ୍ରୀକ ମାଇଲା
କେ ବୋଲଇ ସେହି ରାମ କାହୁଁ ବା ଅଇଲା
କେ ବୋଲଇ ଆରେ ଭାଇ ରାମଙ୍କୁ ନ ଡର
କେ ବୋଲଇ ଆରେ ଭାଇ କପି ବଳୀୟାର
କେ ବୋଲଇ ରାଣୀଙ୍କର ନାକ କାଟି ନେଲା
କେ ବୋଲଇ ସେହି ନାଭିଦୈତ୍ୟକୁ ମାଇଲା
କେ ବୋଲଇ ଆଗ ହନୁମନ୍ତକୁ ମାରିବା
ହନୁମନ୍ତ ମଲାପରେ ରାମଙ୍କୁ ମାରିବା ।
ଏପରି ରାଉତମାନେ ବିଚାର କରନ୍ତ
ବାଦ୍ୟନାଦ ଶବଦରେ ପୃଥ୍ୱୀ ଚମକାନ୍ତ ।
ବଜଘୋଷ ଦାଉଣ୍ଡି ଯେ ଟମକ ନିଶାଣ
ବୀରବାଦ୍ୟ ନାଦ ଶୁଭୁଅଛି ଘନ ଘନ ।
ରାଜନ ଦେଖିଣ ଅତି ହରଷ ହୋଇଲା
ପାତ୍ରମନ୍ତ୍ରୀ ଅମାତ୍ୟଙ୍କୁ ପୁଣି ଡକାଇଲା ।
ଗୋଟି ଗୋଟି କରି ସବୁ କହିଲା ବୁଝାଇ
ମୋହର ଶତ୍ରୁକୁ ବାବୁ ମାରି ଆସ ଯାଇ ।
ହେଳା ନ କରିବ ଯୁଦ୍ଧେ ରାମକୁ ମାରିବ
ଏ ବିଲଙ୍କା ପୁର ଗୋଟି ନିଶ୍ଚିନ୍ତ କରିବ ।
ଯେ ରାମକୁ ମାରିଦେବ ଆଗରେ ମୋହର
ବିଲଙ୍କା ନଗରେ ସେହି ହେବ ମନ୍ତ୍ରୀବର ।
ଏତେ ବୋଲି ରାଏ ଗୁଆ ପାନ ବାଣ୍ଟିଦେଲେ
କାକୁ ଶାଢ଼ୀ କାକୁ ସୁନାବାଲା ପିନ୍ଧାଇଲେ ।
କାହାକୁ ଆନନ୍ଦେ କାଖେ ଧରିଣ ବୋଲନ୍ତ
ଶ୍ରୀରାମଙ୍କୁ ମାରି ବୋଲି ଆଦେଶ ଦିଅନ୍ତ ।
କାହା ଓଷ୍ଠ ଧରି ପୁଣି ବୋଲେ ସେ ଅସୁର
ଶ୍ରୀରାମ ଯେମନ୍ତେ ମରେ ସେ ଉପାୟ କର ।
ଶୁଣିଣ ରାଉତମାନେ କ୍ରୋଧେ ପରଜ୍ୱଳି
କମ୍ପାଇ ଭାଳେଣି କହୁଅଛ ମହାବଳୀ ।
କାଲିଯୁଦ୍ଧେ ନିଶ୍ଚେ ମାରି ଦେବୁ ରଘୁବୀର
ହନୁକୁ ମାରିଣ ଆଣି ଦେବୁ ତୋ ଆଗର ।
ଶୁଣିଣ ନୃପତି ଆସ୍ଥାନରୁ ଉଠିଗଲା
ନିଜ ଅନ୍ତଃପୁର ମଧ୍ୟେ ପ୍ରବେଶ ହୋଇଲା ।

ମୁଦୁସୁଲୀମାନେ ସର୍ବେ ଖଟିଲେ ପାଶରେ
ବିଜେ କଲେ ନୃପବର ରାଣୀହଂସ ପୁରେ ।
ମହାଦେଈମାନଙ୍କୁ ସେ ପାଶକୁ ରାଇଲା
କି କରିବ ଅକାରଣ ଶତ୍ରୁ ରାମ ହେଲା ।
ରାଣୀଏ ବୋଇଲେ ରାଜା ଭାଳୁଛ କମ୍ପାଇ
ରାମକୁ ଇତର ପ୍ରାୟେ ନ ମଣ ଗୋସାଇଁ ।
ପରମ ପୁରୁଷ ସେହି ରଘୁକୁଳ ବୀର
ଦଶରଥ ନନ୍ଦନ ସେ ଜାନକୀର ବର ।
ଅସୁରମାନଙ୍କୁ ମାରି ଉଶ୍ୱାସିବ ଭାର
ତାହା ସଙ୍ଗତରେ ଦେବ ନ କର ସମର ।
ଆଜରାତ୍ରେ ଦେବ ଆମ୍ଭେ ଦେଖିଲୁ ସ୍ୱପନ
ଶ୍ରୀରାମ ହସ୍ତରେ ନାଥ ପାଇଲୁ କଷଣ ।
ଏ ନଗରେ ଯେତେ ଥିଲେ ଅସୁର ଅସୁରୀ
ଶ୍ରୀରାମଙ୍କ ହସ୍ତେ ମରି ଗଲେ ସ୍ୱର୍ଗ ପୁରୀ ।
ଲୁହ ମଇ ବୁଲିଇଲା ବିଲଙ୍କା ଭୁବନ
ଏ ନଗର ଗୋଷ୍ଠୀ ହେଲା ଦେବତାଙ୍କ ସ୍ଥାନ ।
ରାଜା ବୋଲେ ସ୍ୱପ୍ନକଥା କେହୁଁ ହେବ ସତ
ଶ୍ରୀରାମ ହସ୍ତରେ ଯେବେ ମରଣ ନିୟତ ।
ପରମ ପୁରୁଷ ସେହି ରାମ ଅବତାର
ଅସୁର ଜନ୍ମରୁ ମୁହିଁ ହୋଇବି ଉଦ୍ଧାର ।
ରାମଙ୍କୁ ମାରିଣ ମୁହିଁ କୀରତି ରଖିବି
ଏ ଅଜେୟ ବିଲଙ୍କାରେ ସୁଖେ ବିଳସିବି ।
ରାଣୀ ବୋଇଲେ ଭୋ ଦେବ ଆମ୍ଭବୋଲ କର
ପୀରତି କରନ୍ତୁ ଯାଇ ଶ୍ରୀରାମ ସଙ୍ଗର ।
ରାମ ଦୟା କଲେ ଆଉ ଭୟ କିଛି ନାହିଁ
ରାମରେ ଦୋରେହା କେବେ ନହୁଅ ଗୋସାଇଁ
ଏହା ଶୁଣି ନୃପବର ଅଳପ ହସିଲା
ରାଣୀଙ୍କ ମୁଖକୁ ଚାହିଁ ସଧୀରେ ବୋଇଲା ।
ଶ୍ରୀରାମ ପାଦରେ କମ୍ପା ଶରଣ ପଶିବା ।
ଲକ୍ଷଶିରା ପୁତ୍ର ହୋଇ ଅକୀର୍ତ୍ତି ଅର୍ଜିବା ।
ଦେବତାମାନଙ୍କୁ ମୁହିଁ ବନ୍ଧଇ ପାଦରେ
ବାଡ଼ ଟାଟି ଯମରାଜା ଖଟେ ନିରନ୍ତରେ ।
କୁବେର ମୋହର ନିତ୍ୟ କରଇ ମହଲ
ବିଶ୍ୱକର୍ମା ଅଟେ ମୋର ଅଶ୍ୱ ବାରୁଆଳ ।
ପାଞ୍ଚଶତ କୋଟି ମୋର ସେନା ବଳୀୟାର
ଅଶୀକୋଟି ରଥୀ ସାତକୋଟି ବାଦ୍ୟକାର ।

ଚଉଷଠି ପଦ୍ମ ପୁଣି ମୋ'ର ସେନାପତି
ବୟାଳିଶ ଖର୍ବ ମୋ'ର ପାଇକ ଅଛନ୍ତି ।
ଶତ ଶିର ପୁତ୍ର ମୋର ବିଶିର ଯୋଦର
ସହସ୍ରେକ ମୁଣ୍ଡ ପୁଣି ଦ୍ୱିସହସ୍ର କର ।
ଏତେ ଥାଇ ଶ୍ରୀରାମଙ୍କୁ ଡରିବ କମ୍ପାଇ
ଏକ ଜଣକରେ ଏତେ ମାରି କି ପାରଇ ।
କାଲି ଯୁଦ୍ଧେ ଜାଣିବ ଗୋ ସକଳ ବୃତ୍ତାନ୍ତ
କେଡ଼େ ବଡ଼ ବଳୟାର ହେବ ରଘୁନାଥ ।
ଏତେବୋଲି ପଲଙ୍କରେ ଶୁଏ ନୃପମଣି
ତାର ପାଦ ମଞ୍ଜିଲେ ବସି ଲକ୍ଷେ ରାଣୀ ।
ଏହନ ସମୟେ ଦେବୀ ପାର୍ବତୀ ଗୋ ଶୁଣ
ଅପୂରବ ଚରିତ ଏ ବିଲଙ୍କା ରାମାୟଣ ।
ସାଧୁଜନମାନେ ଏହି ଶାସ୍ତ୍ରକୁ ଶୁଣନ୍ତି
ପ୍ରତିଦିନ ପଣ୍ଡିତେ ଏ ଶାସ୍ତ୍ର ବଖାଣନ୍ତି ।
ଆଚନ୍ତେ ଶୁଣିଲେ କଟିଯାଏ କଷ୍ଟମାନ
ଅପୁତ୍ରିକ ପୁତ୍ର ପାଏ ଏକଥା ପ୍ରମାଣ ।
ସାବଧାନେ ଶୁଣ ହେମବନ୍ତର ତନୟା
ଶ୍ରୀହିଙ୍ଗୁଳା ପରସନ୍ନେ ଲେଖୁଅଛୁ ଏହା ।
ଜୟ ଜୟ ହିଙ୍ଗୁଳା ଗୋ ଅସୁର ନାଶିନୀ
ଯାହାର ଆଜ୍ଞାରେ ନବକୋଟି କାତ୍ୟାୟିନୀ ।
ସକଳ ଚଣ୍ଡୀଙ୍କି ସେହୁ କରିଛନ୍ତି ଜାତ
ମହିଷାମର୍ଦ୍ଦିନୀ, ଯାର ବର ବିଶ୍ୱନାଥ ।
ସେହି ଶାକମ୍ଭରୀ ଦେବୀ ଅଭୟ ଚରଣ
ଶ୍ରୀ ଶାରଳା ଦାସ ସଦା ମାଗଇ ଶରଣ ।
ଏଥୁ ଅନନ୍ତରେ ସେ ପାର୍ବତୀ ଯୋଡ଼କର
ବୋଇଲେ ହେ ବିଶ୍ୱନାଥ ପ୍ରତିକାର କର ।
ବୋଇଲେ ଯେ ସଜ ହେଲେ ସମସ୍ତ ଅସୁର
ଶ୍ରୀରାମଙ୍କ ସଙ୍ଗତରେ କରିବେ ସମର ।
ଯାହା ଶୁଣିବାକୁ ମନ ବଳିଛି ମୋହର
ବୁଝାଇ କହନ୍ତୁ ଦେବ ଅନୁଗ୍ରହ କର ।
ଈଶ୍ୱର ବୋଲନ୍ତି ଦେବୀ ପାର୍ବତୀ ଗୋ ଶୁଣ
ସେହି ପ୍ରଭାତରେ ବାଦ୍ୟ ଶୁଭେ ଘନଘନ ।
ପର୍ବତ ଉପରେ ରାମଚନ୍ଦ୍ର ଶୋଇଥିଲେ
ଟମକର ଶବ୍ଦ ଶୁଣି ନିଦରୁ ଉଠିଲେ ।
ହନୁକୁ ବୋଲନ୍ତି ପ୍ରଭୁ କୌଶଲ୍ୟାଙ୍କ ବାଳା
ବିଲଙ୍କା ନଗରେ ବାଜୁ ଟମକ ଶୁଭିଲା ।
ଆଜି ନିଜେ ସମର କି କରିବ ଅସୁର
ଏ ବାରେ ଅଇଲେ ନିଶ୍ଚେ ଯିବ ଯମପୁର ।
ଏହାଶୁଣି ହନୁମନ୍ତ ପର୍ବତେ ଉଠିଲା
ଶିଖ ପରେ ବସି ବିଲଙ୍କାକୁ ଦୃଷ୍ଟି ଦେଲା ।
ରାମଚନ୍ଦ୍ର ସମୁଦ୍ରରେ ପଶି ସ୍ନାନ ସାରି
ତର୍ପଣାଦି ସାରି ଆସି ସେ କୋଦଣ୍ଡଧାରୀ ।
ଫଳମୂଳ ଭୁଞ୍ଜିଲେକ ବେଗେ ରଘୁବୀର
ପର୍ବତ ଉପରେ ବସି ସଳଖନ୍ତି ଶର ।
ଏଥୁଅନନ୍ତରେ ଦେବୀ ପାର୍ବତୀ ଗୋ ଶୁଣ
ବିଲଙ୍କା ନଗରେ ସଜ ହେଲେ ସବୁ ସୈନ୍ୟ
ବାହାର ହୋଇଲେ ରାଜାଙ୍କର ସହୋଦର
ମୁକୁଟ ବାନ୍ଧିଲା ତିନିଗୋଟା ମସ୍ତକର ।
ଛଅଭୁଜେ ଛଅଗୋଟି ନେତ ସେ ବାନ୍ଧିଲା
ବୀର କାଛେ ଶିଙ୍କା ବୀର କଟିରେ ଛନ୍ଦିଲା ।
ବାହାରେ ବାହୁଟି ଲୁହା ଧନୁ ଯେ ହସ୍ତରେ
ଶାବଳ ଭୁଜେକ ପାଞ୍ଚଶର ଅନ୍ୟକରେ ।
ମୁଦ୍‌ଗରେକ ବୀରମଣି କନ୍ଧରେ ପକାଇ
ବିମାନ ଉପରେ ବୀର ବିଜେକଲା ଯାଇ ।
ରାଉତ ମହନ୍ତ ଶୀଘ୍ରେ ବାହାର ହୁଅନ୍ତି
ପଟୁଆର ପାଏକ ଯେ ଆଗରେ ଧାମନ୍ତି
ବୀରବାଦ୍ୟ ଶବଦରେ ଉଚ୍ଛୁଳେ ଗଗନ
ଶସ୍ତ୍ରଧରି ଧାଉଁଛନ୍ତି ମହାବଳୀ ସୈନ୍ୟ ।
ତାଙ୍କ ପାଦଘାତେ କମ୍ପି ଉଠଇ ମେଦିନୀ
ଥରହର ହୋଇ କମ୍ପେ ବାସୁକୀର ଫଣୀ ।
ମୁଖରୁ ରୁଧିର ତାର ବାହାର ହୋଇଲା
ରଖ ରଘୁନାଥ ବୋଲି ଉଚ୍ଚରେ ଡାକିଲା
ଉତ୍ତର ଦୁଆରେ ସୈନ୍ୟ ହୋଇଲେ ବାହାର
ଦ୍ୱାଦଶ ଯୋଜନ ମାଡ଼ି ଧାମନ୍ତି ଅସୁର ।
ଅସ୍ତ୍ରଶସ୍ତ୍ର ବୁଲାଇଣ ବାହାସ୍ଫୋଟ ଦ୍ୟନ୍ତି
ହସ୍ତୀମାନେ ଗର୍ଜନରେ ଗଗନେ ଉଠନ୍ତି ।
ଚରମାରି କେହି କେହି ଗଗନେ ଉଠନ୍ତି
ପର୍ବତ କନ୍ଦରେ ବୃକ୍ଷ ଚୂର କରଯାନ୍ତି ।
ଏହାଦେଖି ହନୁମନ୍ତ ରାମଙ୍କୁ ବୋଲଇ
ବେଗେ ଧନୁଶର ଧର ପ୍ରଭୁ ରଘୁସାଇଁ ।
ଅଇଲେ ଅସୁର ଯେହ୍ନେ ସମୁଦ୍ର ଲହରୀ
ସମ୍ଭାଳ ସମର କର ଆହେ ରୂପଧାରୀ ।

ମେତେ ଲାଗୁ ଅଛଇ ତ ଅଇଲା ରାଜନ
ଘୋର ଯୁଦ୍ଧ ହେବ ଆଜ ହେ ରଘୂନନ୍ଦନ ।
ଶୁଣି ରଘୁନାଥ ବେଗେ ଧନୁଧରି କରେ
ବିଶ୍ୱାମିତ୍ର ସୁମରଣ ଲଗାଇଲେ ଶିରେ ।
ଗୁଣ ଚଢ଼ାଇଲେ ପ୍ରଭୁ ଧନୁହସ୍ତେ ନେଇ
ଭୀଷଣ ଟଙ୍କାର ଶବ୍ଦ କଲେ ରଘୁସାଇଁ ।
ଭୀଷଣ ଗର୍ଜ୍ଜନ କଲା ହନୁମନ୍ତ ବୀର
ଶୁଣିକରି କମ୍ପମାନ ହୋଇଲେ ଅସୁର ।
ଗରୁଡ଼କୁ ଦେଖି ଯେହ୍ନେ ସର୍ପ ଧ୍ୱସ୍ତସାନ୍ତ
ତେହ୍ନେ ପଛଘୁଞ୍ଚା ଦେଇ ଅସୁରେ ରହନ୍ତ ।
ନିଶିରା ଡାକଇ ପଛେ ରୁହ କାହିଁପାଇଁ
ଏକ କ୍ଷଣକରେ ଅବା କି କରି ପାରଇ ।
ଏତେ ବୋଲି ସେ ଦଇତ୍ୟ ହେଲା ଅଗ୍ରସାର
ରଥ ଧୂଆଇଣ ବେଗେ ଧାଇଁଲେ ଅସୁର ।
ଆରେ ଆରେ ରାମ ବୋଲି ଧନୁକୁ ଧଇଲା
ପଞ୍ଚଲକ୍ଷ ନାରାଚ ସେ ମନ୍ତ୍ରିଣ ବିନ୍ଧିଲା ।
ବଜ୍ରସମ ଶବ୍ଦ କରି ଚଳଇ ନାରାଚ
ଦେଖି ପିଠି ପାତିଲା କି ପବନ ତନୁଜ ।
ନାରାଚ ପଡ଼ିଲା ହନୁ ଉପରେଣ ଯାଇ
ସେ ନାରାଚ ବାଜ ଅଗ୍ନି ଜଳଣ ଉଠଇ ।
ତାହା ଦେଖି ଚମତ୍କାର ହୋଇଲା ଅସୁର
କ୍ରୋଧ ହୋଇ ବିନ୍ଧିଲାକ ପୁଣି ବ୍ରହ୍ମଶର ।
ଏହା ଦେଖି ରଘୁନାଥ ଧନୁକୁ ଧଇଲେ
ବ୍ରହ୍ମଶରକୁ ଯେ ବ୍ରହ୍ମ ଶକତ୍ତ ମାଇଲେ ।
ତଥାପି ସେ ବ୍ରହ୍ମଶର ବାହୁଡ଼ି ନ ଗଲା
ଜ୍ୱାଳାବଳୀ ବାଣ ବିନ୍ଧିଲେକ ରଘୁବଳା ।
ତେବେ ବ୍ରହ୍ମଶର କେବେ ବାହୁଡ଼ି ନ ଯାଇ
ଶ୍ରୀରାମଙ୍କ ଉପରକୁ ଆସୁଅଛି ଧାଇଁ ।
ତାହା ଦେଖି ଧାଇଁଗଲା ହନୁମନ୍ତ ବୀର
ଦୈତ୍ୟ ଉପରକୁ ଫିଙ୍ଗିଦେଲା ବ୍ରହ୍ମଶର ।
ଦଇତ୍ୟ ଉପରେ ବାଣ ପଡ଼ିଲାକ ଯାଇଁ
ରଥ ପୋଡ଼ିଗଲା ଦୈତ୍ୟ ଭୂମିରେ ପଡ଼ଇ ।
ଧାଇଁ ହନୁମନ୍ତ ତାକୁ ଆକର୍ଷି ଧଇଲା
ଲେଉଟାଇ ପୁଣି ଦୈତ୍ୟ ହନୁକୁ ଧଇଲା ।
ତାର ଚରଣକୁ ଧରି ଗଗନେ ବୁଲାଇ
ମାଳ ମୁଦ୍ଗର ହସ୍ତେ କରୁଡ଼ିଲା ନେଇ ।

ହନୁଦେହ ବାଜ ପରବତ ହେଲା ଚୂର୍ଣ୍ଣ
ମୋହ ହୋଇ ତଳେ ପଡ଼େ ବୀର ହନୁମାନ ।
ମାଡ଼ିଣ ବସିଲା ହନୂମନ୍ତକୁ ଅସୁର
ମୁଦ୍ଗରେକ ଧରି କ୍ରୋଧେ କରଇ ପ୍ରହାର ।
ଚଳି ନ ପାରଇ ଆଉ ବୀର ହନୁମାନ
ଉଚ୍ଚସ୍ୱରେ ଡାକଦେଲା ରଖ ହେ ଶ୍ରୀରାମ ।
ତାହାଶୁଣି ଧାଇଁଲେ ସେ କୋଦଣ୍ଡ ଧାରଣ
ଅସୁରକୁ ବିନ୍ଧିଲେକ ଦଶଗୋଟା ବାଣ ।
ପୁଣି ପାଞ୍ଚଶତ ବାଣ ବିନ୍ଧିଲେକ ଟାଣି
ତିନିଶତ ବାଣ ପ୍ରହାରିଲେ ରଘୁମଣି ।
ବାଣ ଯାଇ ପଡ଼ିଲାକ ଅସୁର ଉପରେ
ଉପୁଡ଼ିଣ ଶର ସବୁ ପଡ଼ିଲେ ଭୂମିରେ ।
ଦେଖିଣ ଶ୍ରୀରଘୁନାଥ ଚମତ୍କାର ହେଲେ
ପାଶୁପତ ବାଣ ପୁଣି କୋପେଣ ବିନ୍ଧିଲେ ।
ସେ ବାଣ ଅସୁର ଅଙ୍ଗେ ପଡ଼ି ଭାଙ୍ଗିଗଲା
ଶ୍ରୀରାମଙ୍କୁ ଗୃହିଁ ଦୈତ୍ୟ ଗର୍ଜିଣ ଉଠିଲା ।
ଏହା ଦେଖି କୋପଭରେ କୋଦଣ୍ଡ ଧାରଣ
ହାବଡ଼ା ଶରେକ ପୁଣି ବିନ୍ଧିଲେ ମନ୍ତ୍ରିଣ
ଦଇତ୍ୟ ଉପରେ ଯାଇ ପଡ଼ିଲା ସେ ଶର
ସମ୍ଭାଳି ନ ପାରିଲା ସେ ପ୍ରତାପୀ ଅସୁର ।
ଘାଏ ଘୂମାଇଲା ସେହି ପ୍ରତାପୀ ଦଇତ
ଲେଉଟାଇ ପକାଇଣ ବୀର ହନୂମନ୍ତ ।
ଅସୁର ଉପରେ ମାଡ଼ି ବସିଲାକ ଯାଇଁ
ବଜ୍ରସମ ବିଧା ଏକ ମାଇଲା କଠାଇ ।
ବିଧା ବାଜିବାରୁ ଅଗ୍ନି ଉଠିଲାକ ଜଳି
କୋପ ହୋଇ ପୁଣି ଦୈତ୍ୟ ଉଠିଲା ପ୍ରଜ୍ୱଳି ।
ଆକର୍ଷି ହନୁକୁ ଦୈତ୍ୟ ଧଇଲାକ ଯାଇଁ
ଦୁଇବୀର ହସ୍ତେ ହସ୍ତ ଛନ୍ଦା ଛନ୍ଦି ହୋଇ ।
ମୁଣ୍ଡେ ମୁଣ୍ଡେ ମାରନ୍ତି ସେ ହୋଇ କୋପଭର
ଘୋର ଗରଜନ କରି କରନ୍ତି ସମର ।
ପାଦରେ ପର୍ବତମାନ ହେଉଛନ୍ତି ଚୂର୍ଣ୍ଣ
ପୃଥିବୀ ହେଲେଣ ହେନୁ ଅଛଇ ଗଗନ ।
ବାହାକୁ ବାହା ସେ ଦୁହେଁ ହେଲେ ଛନ୍ଦାଛନ୍ଦି
ଗଜକୁ ଦେଖିଲେ ଯେହ୍ନେ ଗଜ ହୁଏ ଛନ୍ଦି ।
ଅସୁରକୁ ମାଡ଼ି ବସି ଅଞ୍ଜନା କୁମର
ବଜ୍ରମୁଥେ ମାଇଲା ସେ ଛାତିରେ ତାହାର ।

ମୁଖ ବାଜବାରୁ ଅଗ୍ନି ଜଳଣ ଉଠିଲା
ଅସୁରର ଅଙ୍ଗ ଗୋଟା ବ୍ୟଥା ସେ ପାଇଲା ।
ଲକ୍ଷଣୀରା ନନ୍ଦନ ସେ ଗର୍ଜିଣ ଉଠିଲା
ହନୁକୁ ଧରିଣ ଗଗନରେ ବୁଲାଇଲା ।
ପ୍ରଚଣ୍ଡ ପର୍ବତ ନେଇ କଚଡ଼ିଣ ଦେଲା
ବେନଫାଳ ହୋଇ ପରବତ ଫାଟିଗଲା ।
ମୋହ ହୋଇ ପଡ଼େ ବୀରବର ହନୁମାନ
ରାମ ଗୁରୁ ପାରୁଶରେ ବେଢ଼ିଗଲେ ସୈନ୍ୟ
ଶତପୁର କରି ଦୈତ୍ୟ ବେଢ଼ିଲେକ ଯାଇ
ତୀକ୍ଷଣଭଲ୍ଲ ଶାବେଳ ସେ ମାରନ୍ତି ଛୁଡ଼ାଇ ।
ଅସିପଟୀ ତୀକ୍ଷ୍ଣ ମୁନା ଶୂଳ କଙ୍କପତ୍ର
ମୁଦ୍‌ଗର ଧରିଣ କୋପେ ମାରନ୍ତି ଦଇତ୍ୟ ।
ଭାଉତେ ଧନୁରେ ପୂରାଇଣ ତୀକ୍ଷ୍ଣ ବାଣ
ଶ୍ରୀରାମଙ୍କ ଉପରକୁ ବିନ୍ଧିଲେକ ପୁଣ ।
କକଡ଼ା ମାସର ବୃଷ୍ଟି ପରାପ୍ରୁ ପଡ଼ଇ
ଦିବସରେ ଅନ୍ଧକାର ଦିଶେ ରଣଭୂଇଁ ।
ହନୁକୁ ପକାଇ ଦେଇ ଦଇତ ଧାଇଁଲା
ପ୍ରଚଣ୍ଡ ଗିରିକ କରେ ଧରି ଉପାଡ଼ିଲା ।
ଶ୍ରୀରାମଙ୍କ ଉପରକୁ ମାଇଲା ଅସୁର
ଅପସରି ଅଙ୍ଗ ଲୁଚାଇଲେ ରଘୁବୀର ।
ଦେବତାଏ ଏହା ଦେଖି ହାହାକାର କଲେ
ହେ ଧର୍ମ ରାମକୁ ରଖ ବୋଲିଣ ଡାକଲେ
ସମୁଦ୍ରରେ ସେ ପର୍ବତ ପଡ଼ିଲାକ ଯାଇଁ
ସେ ପର୍ବତ ପଡ଼ନ୍ତେଣ ପୃଥିବୀ କମ୍ପଇ ।
ପୁନରପି ରଘୁନାଥ ହେଲେ ଆଗୁସାର
ଦୈତ୍ୟ ଉପରକୁ ବିନ୍ଧିଲେକ ଲକ୍ଷେ ଶର ।
ସେ ଶର ଦୈତ୍ୟର ହୃଦେ ପଡ଼ିହେଲା ଚୂର୍ଣ୍ଣ
ପାଞ୍ଚଲକ୍ଷ ବାଣ ପୁଣ ବିନ୍ଧିଲେ ଶ୍ରୀରାମ ।
ସେ ଶରକୁ ଦୈତ୍ୟ ଭୁଜେ ଆକର୍ଷି ଭାଙ୍ଗିଲା
ଧନୁ ଧରି ଲକ୍ଷେ ବାଣ ବେଗେ ପ୍ରହାରିଲା ।
କଟୁଶୀ ବାଣରେ କାଟି ଦେଲେ ରଘୁବୀର
ଭୁଜବାଣ ମନ୍ତ୍ରି ବେଗେ ବିନ୍ଧିଲା ଅସୁର ।
ଦେବଗଣେ ତାହାଦେଖି କଲେ ହାହାକାର
ନଷ୍ଟ ଏହି ବାଣେ ଧ୍ୱଂସ ହୋଇଲା ସଂସାର
ତେଜର ଆଘାତେ ତିନି ବ୍ରହ୍ମାଣ୍ଡ ଦହଇ
ମାଳବାଣ ବିନ୍ଧି ବେଗେ ପ୍ରଭୁ ରଘୁସାଇଁ ।

କାଟି ପକାଇଲେ ଗଗନରେ ସେହି ଶର
ତାହା ଦେଖି ହାହାକାର କଲେକ ଅସୁର ।
ଦେଖିଣ କୋଦଣ୍ଡଧାରୀ ପ୍ରଭୁ ରଘୁବୀର
କୋପେଣ ବିନ୍ଧିଲେ ସେ ଅଢ଼ାଇ ଲକ୍ଷ ଶର ।
ବଜ୍ର ତୁଲ୍ୟ ଶର ଦୈତ୍ୟ ଅଙ୍ଗରେ ବାଜଇ
ଉପୁଡ଼ି ସେ ଶର ପଡ଼େ ଖଣ୍ଡ ଖଣ୍ଡ ହୋଇ ।
ଉଚ୍ଚେ ଡାକେ ଆରେ ରାମ ଆଜ ଯିବୁ କାହିଁ
ଯମର ଭୁବନ ତୋତେ ଦେଖାଇବି ନେଇ ।
ଆଜ ତୁହି ପଡ଼ିଅଛୁ ଅଗ୍ରତେ ମୋହର
ଏହିକ୍ଷଣି ମୁହିଁ ମୁଣ୍ଡ କାଟିବି ତୋହର ।
କୋପରେ ନିଶିର ବୀର କମ୍ପେ ଘନ ଘନ
ନିଶ୍ୱାସ ଶୁଭଇ ଯେହ୍ନେ ମେଘ ଗରଜନ ।
କହୁଁ କହୁଁ ବୀର ସେ ମୁଦ୍‌ଗର ଧରି କରେ
କୋପେ ପ୍ରହାରିଲା ନେଇ ରାମଙ୍କ ଉପରେ ।
ଅସୁରବଳ ସେ ଗୁରୁ ପାରୁଶରେ ଥିଲେ
ଶତେପୁର କରିଣ ସେ ରାମକୁ ବେଢ଼ିଲେ ।
ବାଣ ବିନା ମେଦିନୀରେ କିଛି ନ ଦିଶଇ
ଅଗୋଚର ସମର ସେ କଳନା ନ ଯାଇ ।
ବୀରବର ହନୁମନ୍ତ ମୋହେ ପଡ଼ିଥିଲା
ଚେଇଁ ଉଠି ବେଗେ ଯୁଦ୍ଧ ଭୂମିକି ଚାହିଁଲା ।
ଦେଖିଲାକ ଗୁରୁପାର୍ଶ୍ୱେ କିଛି ନ ଦିଶଇ
ଶ୍ରୀରାମଙ୍କ ବର୍ତ୍ତି ଶବ୍ଦ ନ ପାଇଲା କାହିଁ ।
ଅନ୍ଧକାର ପ୍ରାୟେ ଦେଖି ଯାଏ ହନୁମାନ
ସୈନ୍ୟରେ ପଶିଲା ଯାଇଁ ଅଞ୍ଜନା ନନ୍ଦନ ।
କାଆ ବଢ଼ାଇଲା ବୀର ଦ୍ୱାଦଶ ଯୋଜନ
ଦୁଇଭୁଜେ ଦରଣ୍ଡିଣ ଧରେ ଦୈତ୍ୟ ସୈନ୍ୟ
ଦଶବାଂଶ ପଞ୍ଚବାଂଶ ଧରି ଦଟଣ୍ଡିଇ
ମରରେ ଅସୁରେ ବୋଲି କଚଡ଼ି ଦିଅଇ ।
ପୁଣି ଡେଇଁ ଡେଇଁ ଯାଇଁ ସୈନ୍ୟଙ୍କ ଭିତରେ
କାଳସର୍ପ ଯେହ୍ନେ ପଶେ ମଣ୍ଡୁକୀ ଗୁଳରେ
ଦଧିଭାଣ୍ଡେ ମଧ୍ୟେ ଖିଆ ଯେସନେ ପଶଇ
କଦଳୀବନକୁ ଯେହ୍ନେ ମାତଙ୍ଗ ଭାଙ୍ଗଇ ।
ମହା କୋପେ ଯୁଦ୍ଧ କରେ ହନୁମନ୍ତ ବୀର
ଏକକୁ କଚଡ଼ୁ ଅଛି ଆରେକ ଉପର ।
କାହାକୁ ବିଧାଏ ମାରେ କାହାକୁ ଖୁନ୍ଦଏ
କାହାକୁ ଧରିଣ ପୁଣି ମାରେ ଗୋଇଠାଏ ।

କାହାକୁ ଗୁଡ଼ାଇ ଲଙ୍ଗୁଳେ ଗଗନେ ବୁଲଇ
ରଥର ଉପରେ ରଥ ନେଇ କଚୁଡ଼ଇ ।
କାର ମୁଣ୍ଡ ଧରି କୋପେ ମୋଡ଼େ ହନୁବୀର
ଅଶ୍ୱକୁ କଚୁଡ଼େ ନେଇ ଅଶ୍ୱର ଉପର ।
ଉଚସ୍ୱରେ ଡାକଇରେ ଦୈତ୍ୟ ଆଜ ମଲ
ଶ୍ରୀରାମ ଠାକୁରଙ୍କର ଦ୍ରୋହେହା ହୋଇଲ ।
ମହାକୋପେ ଯୁଦ୍ଧକରେ ପବନ କୁମର
ଯୁଦ୍ଧେ ମାରି ଅସୁରଙ୍କୁ କରେ ଛାରଖାର ।
ଘଡ଼ିଏକ ଯୁଦ୍ଧକଲା ଅଞ୍ଜନା ନନ୍ଦନ
ଏଗାର ଯୋଜନ ଯାଏ ପଡ଼ିଗଲେ ସୈନ୍ୟ ।
ମୃତ୍ୟୁଶବ ପଡ଼ିଲା ଯେ ପର୍ବତ ଆକାର
ରୁଧିରରେ ଜର ଜର ପବନ କୁମର ।
ଦୈତ୍ୟଙ୍କର ମୃତ୍ୟୁ ଦେଖି ରାଜା ସହୋଦର
ଆରେ ରେ ବାନର ବୋଲି ଧାଇଁଲା ଅସୁର ।
ହନୁମନ୍ତ ବୀରକୁ ଯେ ଆକର୍ଷିଲା ଯାଇଁ
ବଜ୍ରବଧା ଗୋଟାଏକ ମାଇଲା ନଠାଇ ।
ମୁହଁମାଡ଼ି ପଡ଼ିଲା ସେ ହନୁମନ୍ତ ବୀର
ଶ୍ରୀରାମ ସୁମରି ପୁଣି ଉଠିଲା ସତ୍ୱର ।
ଦଇତର କନ୍ଧପରେ ଯାଇଣ ବସିଲା
ତନମୁଣ୍ଡ ଧରି ହନୁମନ୍ତ ଯେ ଝିଙ୍କିଲା ।
ରତ୍ନଚୂଡ଼ ପକାଇ ତାର ଛିଣ୍ଡାଏ ମୁକୁଟ
ଗଗନରେ ଉଡ଼ଇ ସେ ପବନର ଗୃଷ୍ଟ ।
ଉପରକୁ ଡେଇଁଯାଇ ପ୍ରତାପୀ ଅସୁର
ଶାବେଳ ମୁଦ୍‌ଗରଘେନ ମାରେ ଦୈତ୍ୟବୀର ।
ତାହା ବଞ୍ଚାଇଣ ବେଗେ ଧାଇଁଲା ମାରୁତି
ଦଇତ ଉପରେ ପାଦ ପ୍ରହାରିଲା ଧାଇଁ ।
ହନୁ ପଦାଘାତେ ଦୈତ୍ୟ ଭୂମିରେ ପଡ଼ିଲା
ହନୁମନ୍ତ ଅସୁରକୁ ମାଡ଼ିଣ ବସିଲା ।
ତାର ଗଳଗଣ୍ଡେ ନେଇ ଲଗାଇଲା କର
ହୃଦୟରେ ନାତେକ ମାଇଲା ହନୁବୀର ।
ଅସୁର ସମ୍ଭାଳି ନ ପାରିଲା ପଦାଘାତ
ରୁଧିର ଉଦ୍‌ଗାରି ତଳେ ପଡ଼ିଲା ଦଇତ ।
ଅଚେତନ ହୋଇଲା ସେ ରାବଣର ଭାଇ
ଏହାଦେଖି ହନୁମନ୍ତ ମାଇଲା ଭୁଝାଇ ।
ସାତପଦ୍ମ ସେନା ତାର ପାଖେ ରହିଥିଲେ
ଏହାଦେଖିକରେ ସେ କୋପେ ଅସ୍ତ୍ର ଉଠାଇଲେ

ରଘୁନାଥଙ୍କ ପାଶରେ ବେଢ଼ିଲେକ ଯାଇ
ଶେଲ କୁନ୍ତ ଶାବେଳ ଯେ ମାରନ୍ତି ଭୁଝାଇ ।
ଧନୁଧରି ମାରନ୍ତି ସେ ଲକ୍ଷ ଲକ୍ଷ ଶର
ଘୋର ଯୁଦ୍ଧ କରୁଛନ୍ତି ପ୍ରଭୁ ରଘୁବୀର ।
ବାଣେ ବାଣେ ଶରଜାଳ କରନ୍ତି ଶ୍ରୀରାମ
ଅନୁକ୍ଷଣେ ହେଲା ତହିଁ ଭୀଷଣ ସଂଗ୍ରାମ ।
କମ୍ବୁ ଅମ୍ବୁ ନାମରେ ଯେ ଏ ବେନି ଅସୁର
ପାଞ୍ଚଲକ୍ଷ ରଥ ଘେନି ହେଲେ ଆଗୁସାର ।
ରାମଙ୍କ ଉପରେବର୍ଷିଲେକ ଲକ୍ଷେବାଣ
ତିନବାଣେ ତା କାଟିଲେ କୋଦଣ୍ଡ ଧାରଣ ।
ଏହା ଦେଖି ବେନିଦୈତ୍ୟ କୋପେ ପରଜ୍ୱଳ
ଶ୍ରୀରାମଙ୍କୁ ଅନାଇଣ ଦେଉଛନ୍ତି ଗାଳ ।
ଆରେ ରେ ମାନବ ନଷ୍ଟେ ମରିବୁ ତୁ ଆଜ
ଜାଣିଥା ତୋ ପାଞ୍ଜି ପୋଛିଅଛି ଜନ୍ତୁରାଜ ।
ଲଙ୍କାପୁର ପ୍ରାୟେ ବୁଝିଛୁ କି ଏହୁ ପୂର
ଏଥକୁ ଅଇଲୁ ମୃତ୍ୟୁ ଘେନି ରଘୁବୀର ।
ଶ୍ରୀରାମ ବୋଇଲେ ଆରେ ରେ ମୂର୍ଖ ପାମର
ପ୍ରଚଣ୍ଡ ଅନଳ ପୋଡ଼ି ପାରେ କି ସାଗର ।
ମୁହିଁତ ସାଗର ତୁହି ପ୍ରଚଣ୍ଡ ଅନଳ
ଲିଭାଇ ଦେଉଛି ତୋତେ ନୁହ ତୁ ଆକୁଳ ।
ଶୁଣି ବେନି ଦୈତ୍ୟ ଧନୁ ଧରିଣ ଧାଇଁଲେ
ଲକ୍ଷ ଲକ୍ଷ ନାରାଚ ଯେ ରାମଙ୍କୁ ବର୍ଷିଲେ ।
ବାଣକେ ବର୍ଷିଲେ ରାମ ତୂଣିରରୁ କାଢ଼ି
ବେନିଖଣ୍ଡ ହୋଇ ତାର ଶିର ଗଲା ଛିଡ଼ି ।
କୋପେ ବେନିଦୈତ୍ୟ କରି ଘୋର ଗରଜନ
ରାମଙ୍କୁ ବର୍ଷିଲେ ପୁଣି ପାଞ୍ଚଲକ୍ଷ ବାଣ ।
ବାଣମାନ ଆକାଶକୁ କଲେ ଆଚ୍ଛାଦନ
କଙ୍କୁଶି ଶରରେ ତାହା ନିବାରିଲେ ରାମ ।
ଶକତି ମୂଷଳ ପୁଣି ମାଇଲେ ଅସୁର
ବ୍ରହ୍ମବାଣେ ନିବାରିଲେ ତାହା ରଘୁବୀର ।
ଅମୋଘ ଶକତି ଏକ ଗୁଣରେ ବସାଇ
ରାମ ଉପରକୁ ଅମ୍ବୁ ଦଇତ୍ୟ ବର୍ଷଇ ।
ଦେଖି ରଘୁନାଥ ଜ୍ୱାଳାବଳୀ ବାଣ ମାରି
ପାଶୁପତ ବାଣ ପୁଣି ବର୍ଷି ରିପୁଧାରି ।
ବେନି ଅସୁରଙ୍କ ମୁଣ୍ଡ କାଟି ପକାଇଲେ
ଶ୍ରୀରାମଙ୍କ ଶିରେ ଦେବ ପୁଷ୍ପ ବୃଷ୍ଟି କଲେ ।

ଏଥୁ ଅନନ୍ତରେ ଶୁଣ ଦେବୀ ଗୋ ଭବାନ
ମଲେ ଯହୁଁ ଅମ୍ବୁ କମ୍ବୁ ଏହି ଦୈତ୍ୟବେନ ।
ପ୍ରଲମ୍ବା ନାମରେ ଥିଲା ଏକଇ ଅସୁର
ଅମ୍ବାସୁର ଅଟେ ପୁଣି ତାର ସହୋଦର ।
ଏ ବେନି ଅସୁର କ୍ରୋଧ ପ୍ରଜ୍ୱଳିତ ହୋଇ
ଶୃଦ୍ଧବେଗେ ଶ୍ରୀରାମଙ୍କୁ ବେଢ଼ିଲେକ ଯାଇ ।
ବର୍ଷନ୍ତି ବାଣ ଶଲ୍ୟ କୁନ୍ତ ଅଙ୍କୁଶ
ଗଦା ମୁଦଗର ଘାତେ ଭାଙ୍ଗନ୍ତି ପର୍ବତ ।
ପର୍ବତ କନ୍ଦର ବୃକ୍ଷ ହେଲା କମ୍ପମାନ
ବାଣାଘାତେ ବସୁମତୀ କମ୍ପେ ଘନ ଘନ ।
ହନୁମନ୍ତ ବୀର ଘୋର ଯୁଦ୍ଧ ଯେ କରଇ
ଅସୁରଙ୍କ ଗରଜନେ ସିନ୍ଧୁ ଉଚ୍ଛୁଳଇ ।
ବାଣବନ୍ଧ ଦୈତ୍ୟଗଣେ ହେଲେ ଅଶକତ
ଅସୁରଙ୍କୁ ମାରି ନ ପାରିଲେ ରଘୁନାଥ ।
ବିସ୍ମୟ ମନରେ ତହୁଁ ଭାଳିଲେ ଶ୍ରୀରାମ
ବୋଇଲେ ମୁଁ ଆଉ କେତେ କରିବି ସଂଗ୍ରାମ
ନ ମରନ୍ତେ ଅସୁରେ ମୁଁ ପଶିବି ବନରେ
ସ୍ୱର୍ଗପୁର ପଛେ ଭୋଗ କରନ୍ତୁ ଅସୁରେ ।
ତାହା ଦେଖି ବିସ୍ମୟ ହୋଇଲେ ଦେବଗଣ
ଥରହର କମ୍ପିଲା ସେ ଅମର ଭୁବନ ।
ବ୍ରହ୍ମା ଡାକ ଦେଲେ ଶୁଣ ଆହେ ରଘୁବୀର
ଏ ସ୍ୱର୍ଗ ପୁରକୁ ନଷ୍ଟେ ଭାଙ୍ଗିବେ ଅସୁର ।
ତୁମ୍ଭେ ଯେବେ ନ ମାରିବୁ ଆଉ କେ ମାରିବ
ତୋହରେ ଶରଣ ଗଲୁ ଏବେ ସର୍ବଦେବ ।
ନ ଛାଡ଼ନ୍ତୁ ଧନୁ ଦେବ ମାରି ଲଙ୍କପତି
ଏହାକୁ ମାଇଲେ ନଷ୍ଟେ ରହିବ କୀରତି ।
ଏତେ ବେଳି ଦେବଗଣେ ବଡ଼ ଭୟକଲେ
ବଜ୍ରସ୍ମା ନାମରେ ରଥ ବ୍ରହ୍ମା ଭିଆଇଲେ ।
ଚିତ୍ର ସେନକୁ ବୋଇଲେ ରଥ ଘେନିଯିବୁ
ଶ୍ରୀରାମଙ୍କ ରଥରେ ତୁ ସାରଥି ହୋଇବୁ ।
ଯେମନ୍ତେ ବିଲଙ୍କା ଦେଶ ନୃପତି ମରଇ
ଦେବତାଙ୍କ କାର୍ଯ୍ୟ ବେଗେ କରିବାରୁ ଯାଇ
ଏହା ଶୁଣି ଚିତ୍ରସେନ ଆରୋହି ବିମାନ
ଗଗନ ମାର୍ଗରେ ଶୀଘ୍ର ଚଳାଇଲେ ଯାନ ।
ଶ୍ରୀରାମଙ୍କ ଆଗେ ବୀର ମିଳିଲେକ ଯାଇ
ପାଦେ ପଡ଼ି ଚିତ୍ରସେନ ଗନ୍ଧର୍ବ ବୋଲଇ ।

ହେ ଦେବ ଏ ରଥ ଦେଇଛନ୍ତି ବେଦବର
ଏ ରଥରେ ଥାଇ ଦେବ କରିବ ସମର ।
ଏହା ଶୁଣି ରଘୁନାଥ ଆନନ୍ଦ ହୋଇଲେ
ସେ ରଥ ଉପରେ ରାମ ଯାଇ ବିଜେକଲେ ।
ଦେବତାଙ୍କ ଶରମ ନ ମାରନ୍ତି ନଠାଇ
ଘୋର ଯୁଦ୍ଧ ଆରମ୍ଭିଲେ ରଘୁକୁଳ ସାଇଁ ।
କୁରାଳର ଚନ୍ଦ୍ରପ୍ରାୟେ ଉଡ଼ାଇ ବିମାନ
ଅସୁରଙ୍କ ମୁଣ୍ଡ ରାମ କରନ୍ତି ଛେଦନ ।
ପଡ଼ନ୍ତି ଅସୁରେ ପୁଣି ଉଠନ୍ତି ଗଲ୍‌ଗାଜି
ଗର୍ଜନ୍ତି ମରନ୍ତି ରଣେ ଧନୁଶର ତେଜି ।
ଭୀଷଣ ସମର କଲା ହନୁମନ୍ତ ବୀର
ଲକ୍ଷ ଲକ୍ଷ ଗଲେ ଦୈତ୍ୟ ସଞ୍ଜୀବନୀ ପୁର ।
ପଡ଼ନ୍ତି କଦଳୀ ବନ ପରାୟେ ଅସୁର
ଜଳଧାରା ପ୍ରାୟେ ବହି ପଡ଼ଇ ରୁଧିର ।
ଏହା ଦେଖି ଶମ୍ଭୁ ଦୈତ୍ୟ ଆସେ କୋପଭରେ
ନିଶମ୍ଭୁ ଦଇତ୍ୟ ପୁଣି ଧାଇଁଲା ଶୂନ୍ୟରେ ।
ପ୍ରଲମ୍ବା କଦମ୍ବା ବେଣୁ ଧାତା ନାମେ ଦୈତ୍ୟ
ଲୋହିତାକ୍ଷ ପିଙ୍ଗଳାକ୍ଷ ନାମେ ବଳବନ୍ତ ।
ଶ୍ରୀରାମଚନ୍ଦ୍ରଙ୍କୁ ଚାରି ପାରୁଶେ ବେଢ଼ନ୍ତି
ଅନୁକ୍ଷଣେ ଲକ୍ଷ ଲକ୍ଷ ବାଣ ବରଷନ୍ତି ।
ସେ ନାରାଚ ପଡ଼ୁଅଛି ଜଳଧାରା ପ୍ରାୟେ
ବେନିଖଣ୍ଡ କରିଣ କାଟନ୍ତି ରଘୁରାୟେ ।
ଏକାଳେ ତ୍ରିଶିରା ଶ୍ରୀରାମଙ୍କୁ ଦେଲା ଦୃଷ୍ଟି
ବଜ୍ରସ୍ମା ରଥରେ ବସିଛନ୍ତି ରଘୁସାଇଁ ।
ଏହା ଦେଖି ଅସୁରର ନ ସ୍ଫୁରଇ କଥା
ଚମତ୍କାର ହୋଇ ଶମ୍ଭୁ ଦଇତ୍ୟକୁ ପୁଚ୍ଛି ।
ଏ ରଥ ଆଣିଲା କାହୁଁ ଏହି ରଘୁବୀର
ଦେବଙ୍କର ଯାନ ଏହି ଥିଲା ସ୍ୱର୍ଗପୁର ।
ଶମ୍ଭୁଦୈତ୍ୟବୋଲେ ଦେଲେ ଆଣି ଦେବଗଣ
ଏ ରଥ ଉପରେ ଯୁଦ୍ଧ କରେ ରଘୁରାଣ ।
ଶ୍ରୀରାମଙ୍କୁ ଇତର ତୁ ନ ମଣରେ ଭାଇ
ପରଂବ୍ରହ୍ମ ପୁରୁଷ ଏ ଶ୍ରୀରାମ ଅଟଇ ।
ନୃପତି ବୁଝିଲେ ସିନା ହୋଇବତ ସବୁ
ନୋହିଲେ ଏହାର ହସ୍ତେ ମରିବାରେ ବାବୁ ।
ତ୍ରିଶିରା ବୋଇଲା ଚାଲ ରାଜାଙ୍କୁ କହିବା
ଶ୍ରୀରାମଙ୍କ ସଙ୍ଗତରେ ପ୍ରୀତି ବଢ଼ାଇବା ।

ଏମନ୍ତ ପ୍ରକାରେ ଦେବ ଦୈତ୍ୟ ବଗୃରଲେ
ରଣଭୂମି ତେଜି ଦୁହେଁ ଅପସର ଗଲେ ।
ଦେଖିଲେ ସୈନ୍ୟରୁ ଆଉ ଗୋଟିଏକ ନାହିଁ
ରୁଧିରମୟ ଯେ ଗୃରଦଗ ଦିଶୁଛଇଁ ।
ଦେଖି ନର ପାଞ୍ଚଖାର ହୋଇଗଲେ ବାହାର
ପଳାଇ ପଶିଲେ ଯାଇ ବଲଙ୍କା ନଗର ।
ଗୋଡ଼ାଇ ମାରନ୍ତି ତାଙ୍କୁ ରାମ ହନୁମାନ
ଉବୁରା ସୈନ୍ୟଙ୍କୁ ସଂହାରିଲେ ରଘୁନାନ ।
ଏକମୁଖ ହୋଇ ତହୁଁ ଦୈତ୍ୟ ପଳାଇଲେ
ବଲଙ୍କା ନଗରେ ରାଜା ଆସ୍ଥାନେ ମିଳିଲେ ।
ଗଡ଼ଦ୍ୱାର ପରଯନ୍ତେ ଗୋଡ଼ାଇଲେ ରାମ
ବାହୁଡ଼ି ପର୍ବତେ ଆସି କଲେକ ବିଶ୍ରାମ ।
ରଥ ରଖିଲେକ ନୀଳସୁନ୍ଦର ପର୍ବତେ
ସଂଗ୍ରାମ ଭୂମିକି ଗୃହିଁଦେଲେ ରଘୁନାଥେ ।
ଦେଖିଲେ ଅନେକ ଥାଟ ପଡ଼ିଲେ ସମରେ
ହୁରି ଯୁରି ପଡ଼ିଅଛି ବଲଙ୍କା ନଗରେ ।
ହନୁକୁ ବୋଇଲେ ପ୍ରଭୁ ରଘୁକୁଳ ବର
ଦେଖ କେତେ ଆଜ ଯୁଦ୍ଧେ ମରିଲେ ଅସୁର ।
ମାରିବ ଦଇତ୍ୟକୁଳ ଉଣ୍ଡି ସିବ ପୃଥ୍ୱୀ
ଲୁହାମଇ ବୁଲାଇବ ଚମ୍ପସେନ ଏଥି ।
ଏତେକହି ରଘୁନାଥ ରଥରୁ ଉତୁରି
ସମୁଦ୍ରରେ ପଶି ସ୍ନାନ କଲେ ଗୃପଧାରି
ପିତୃତରପଣ ଆଦି କଲେ ରଘୁବୀର
ପର୍ବତରେ ବିଜେକଲେ ସେ କୋଦଣ୍ଡଧର ।
ଫଳମୂଳ ଯୋଗାଇଲେ ପବନ ନନ୍ଦନ
ସେ ଫଳ ଭୋଜନ ସୁଖେ କଲେକ ଶ୍ରୀରାମ ।

— — —

## ନିଶିର ଓ ରାଜାର କଥୋପକଥନ ରାଜାର ପ୍ରଥମଥର ଯୁଦ୍ଧକୁ ଗମନ ରାମ ଓ ଦେବଗଣଙ୍କ ସହ ଯୁଦ୍ଧ ଯୁଦ୍ଧରୁ ଦଣ୍ଡଭଗ୍ନ ହୋଇ ପଳାଇ ଆସି ନିଜର ଆତ୍ମଖେଦ ଓ ରାତ୍ରରେ ସ୍ୱପ୍ନ ଦର୍ଶନ

ଏଥିଅନ୍ତେ ଯାହା ହେଲା ଶୁଣ ଗୋ ପାର୍ବତୀ
ଶୁଣିଲେ ନଷ୍ଟହୁଏ ଭବ ଲଭିବ ମୁକତି ।
ସାମ ବେଦୁ ବାଲ୍ମୀକ କରିଛନ୍ତି ଜାତ
ଶ୍ରୀସିଦ୍ଧ ଶାରଳା ଦାସ କଲେ ତାହା ଗୀତ ।
ଶୁଣନ୍ତେ ଶୁଣାନ୍ତେ ଦେହେ ପାପ ନ ରହଇ
ଏକମନେ ଏକଧ୍ୟାନେ ଶୁଣ ପ୍ରାଣସହି ।
ଶୁଣିଣ ପାର୍ବତୀ ଦେଖୀ ଯୋଡ଼ିଲେକ କର
ବୋଇଲେ ମୁକତି ମୋତେ କର ଶୂଳଧର ।
ଯୁଦ୍ଧ ତେଜି ପଳାଇଲେ ବଲଙ୍କା ଅସୁରେ
କି ବିଗୃର କଲେ ଯାଇଁ ରାଜା ସଙ୍ଗତରେ
ଏହା ମୋତେ ବିଗୃରଣ କୁହ ପ୍ରାଣସାଇଁ
ଈଶ୍ୱର ବୋଇଲେ ତାହା ଶୁଣ ମନଦେଇ ।
ରାଜାର ଅଗ୍ରତେ ପାଞ୍ଚ ଅସୁରେ ମିଳିଲେ
ପାଦତଳେ ପଡ଼ି କରଯୋଡ଼ି ଜଣାଇଲେ ।
ଭୋ ଦେବ ଶୁଣନ୍ତୁ ଏବେ ହୋଇ ସାବଧାନ
ତୋର ସୈନ୍ୟବଳ ସବୁ ମାଇଲେ ଶ୍ରୀରାମ ।
ରାଉତ ମାହୁନ୍ତ କେହି ଗୋଟିଏକ ନାହିଁ
ସମସ୍ତ ମାଇଲା ଆଜ ରଣେ ରଘୁସାଇଁ ।
ଆମ୍ଭେ ଏକା ପଳାଇଣ ରଖିଲୁ ଜୀବନ
ଗୋଟିଏକ ନ ବର୍ତ୍ତିଲେ ମଲେ ସବୁ ସୈନ୍ୟ ।
ଶୁଣିଣ ବଲଙ୍କା ରାଜା ମନରେ ଭାଳିଲା
କରୂପେ ରାମଙ୍କୁ ମାରିବଇଁ ବିଗୃରିଲା ।
ଏଡ଼େକ ଅଜେୟ ଗଡ଼ ଶତ୍ରୁ ହୋଇ ମୋର
ସକଳ ସୈନ୍ୟଙ୍କୁ ବଧକଲା ରଘୁବୀର ।
ନିଶିରି ବୋଇଲା ଦେବ ଉପାୟ କରିବା
ଶ୍ରୀରାମ ଚରଣ ତଳେ ଶରଣ ପଶିବା ।
ରାମ ଦୟାକଲେ ଆମ୍ଭେ ହୋଇବା ଅମର
ଯୁଦ୍ଧେ କେବେ ଜିଣି ନ ପାରିବା ରଘୁବୀର ।
ଶ୍ରୀରାମ ଅଟଇ ସାକ୍ଷାତରେ ନାରାୟଣ
ଅସୁର ମାରିବା ପାଇଁ ହୋଇଛି ଜନମ ।
ଶ୍ରୀରାମ ଶରଣ ଗଲେ ଭୟ କିଛି ନାହିଁ
ଶ୍ରୀରାମଚନ୍ଦ୍ରଙ୍କୁ ଚାଲ ସେବିବା ଗୋସାଇଁ ।
ଶୁଣିଣ ଦଇତ୍ୟ ଅଙ୍ଗ କମ୍ପେ ଥରହର
ନୟନ ତରାଟି ରାଗେ ଗୃହିଁଲା ଅସୁର ।
ବୋଇଲା ଭାଇରେ ତୁମ୍ଭ ଶତ୍ରୁକୁ ଡରିଲୁ
ମୋହର ମରଣ କଥା ହୃଦରେ ପାଞ୍ଚିଲୁ ।
ଶ୍ରୀରାମ ତ ମୋତେ କେବେ ମାରି ନ ପାରଇ
ମୋର ପରାକ୍ରମ କିବା ରାମ ନ ଜାଣଇ ।

ତୁ କମ୍ପାଇ ଅଧରଧର୍ମ କରୁଅଛୁ ମୋତେ
ଯେବେ ଜୀବନକୁ ଭୟ ଲାଗିଲାକ ତୋତେ ।
ଶ୍ରୀରାମର ପାଶେ ଯାଇଁ ପଶ ଯା ଶରଣ
ହେଉ ପଛେ ମୋର ରାମ ହସ୍ତରେ ମରଣ ।
ତୁ ଯାଇ ଶରଣ ପଶ ଶ୍ରୀରାମ ପାଦରେ
ମୁହିଁ ମଲେ ନୃପତି ହେବୁ ଏ ରାଜ୍ୟରେ ।
ଏହା ଶୁଣି ସେ ନିଶିରା ଦିଅଇ ଉତ୍ତର
ବିରୁଦ୍ଧ କଥାକୁ ତୁ ଭାଙ୍ଗୁ ନୃପବର ।
ଯେତେବଣ ପ୍ରାଣୀର ମୃତ୍ୟୁ ଆଗତ ହୁଅଇ
ଭୂଆରଇ ବୋଲ ସେତୁ ଅବଶ୍ୟ ଭାଙ୍ଗଇ ।
ବେଦ ଶାସ୍ତ୍ର ନିନ୍ଦଇ ସେ ମରଣ ଦିଶିଲେ
ବିଷ୍ଣୁ ଦେବତାଙ୍କୁ ନିନ୍ଦା କରଇ ସେ ଭଲେ ।
ସଭାକୁ ନିନ୍ଦଇ ନ କରଇ ଅଗ୍ନି ମାନ୍ୟ
ଜଳକୁ ନିନ୍ଦଇ ପୁଣି କହେ କୁବଚନ ।
ତୁ ମୋହର ବୋଲ ଯେବେ ନ କଲୁ ରାଜନ
ଶ୍ରୀରାମଙ୍କ ହସ୍ତେ ନଷ୍ଟ ହୋଇବୁ ନିଧନ ।
ହେ ରାମଙ୍କୁ ସାହା ହୋଇଲେଣି ଦେବଗଣ
ବଢ଼ାଇ ଦେଲେଣି ତାଙ୍କୁ ବିଜୟା ବିମାନ
ସେ ରଥରେ ବସି ରାମ ସମର କରଇ
ସେ ରାମଙ୍କୁ ଜିଣିବାକୁ କ୍ଷମୀ ଅଛୁ କାହିଁ ।
ଶୁଣିଣ ସେ ନୃପବର ମହାକୋପ କଲେ
ଦେବଗଣମାନେ ମୋର ବଇରୀ ହୋଇଲେ
ଦେବଙ୍କୁ ମାରିବି ସ୍ୱର୍ଗ ପୁରକୁ ଭାଙ୍ଗିବି
କାଲିର ଯୁଦ୍ଧକୁ ଯାଇ ରାମକୁ ମାରିବି ।
ଏତେବୋଲି ନରପତି ଭିତରେ ପଶିଲା
ବିଜେ ଅବକାଶ ପୁରେ ଯାଇଣ ମିଳିଲା
ରତ୍ନ ପଲଙ୍କରେ ଯାଇ ବସିଲା ନୃପତି
ପରିବାରି ମାନେ ପାଶେ ଖଟିଲେ ତଡ଼ତି ।
ଲକ୍ଷ ଲକ୍ଷ ହୁଳା ଜଳୁଅଛି ଚଉପାଶ
ଶ୍ରୀରାମଙ୍କ କଥା ମନେ ଭାଳଇ ନରେଶ
ଏମନ୍ତ ସମୟେ ଶୁଣ ଆଗେ ହୈମବତି
ବିଲଙ୍କା ପୁରରେ ଲୋକେ ବିକଳ ହୁଅନ୍ତି ।
କେହି କେହି ଏକା ବସି କରନ୍ତି ରୋଦନ
କେହି ଭାରିଯାକୁ ଘେନି କରଇ କ୍ରନ୍ଦନ ।
ପୁତ୍ର ଦୁହିତାକୁ କେହି ଘେନି ସଙ୍ଗତରେ
ରୋଦନ କରନ୍ତି ଘରେ ଘରେ ଉଚ୍ଚସ୍ୱରେ ।
କେ ବୋଲଇ ମୋର ପୁତ୍ର ଆଜ ଯୁଦ୍ଧେ ମଲା
କେ ବୋଲେ ମୋହର ଆଜ ଗୁରୁସ୍ତ ପଡ଼ିଲା
କେ ବୋଲେ ମୋହର ରଣେ ପଡ଼ିଲା ଜୁଆଇଁ
ଯୁବାକାଳେ ଝିଅ ମୋର ବିଧବା ହୁଅଇ ।
କେ ବୋଲଇ ଯୁଦ୍ଧେ ମଲା ମୋହର ଦିଅର
କେ ବୋଲଇ ମଲା ସେ ମୋହର ଦେଢ଼ଶୁର
କେ ବୋଲେ ମଲା ମୋହର ଏକଗୋଟି ବଳା
ଏ ଅଜୟ ଗଡ଼େ ଶତ୍ରୁ ଶ୍ରୀରାମ ହୋଇଲା ।
ମର୍କଟେକ ଘେନି କାହୁଁ ଅଇଲା ଶ୍ରୀରାମ
ଏକା ଜଣକରେ ମାଇଲାକ ଏତେ ସୈନ୍ୟ ।
ମାରି ନ ପାରିଲେ କେହୁ ଏକା ଶ୍ରୀରାମକୁ
ଏକା ମର୍କଟେକ ଧ୍ୱଂସ କଲା ବିଲଙ୍କାକୁ ।
ଏମନ୍ତ କହିଣ ସର୍ବେ ରୋଦନ କରନ୍ତି
ଯେ ଯାହାର ପୁରେ ନିଶ୍ଚିନ୍ତରେ ନ ରହନ୍ତି ।
ଏ ସମୟେ ଯାହା ହେଲା ପାର୍ବତୀ ଗୋ ଶୁଣ
ରାତ୍ର ପ୍ରଭାତରୁ ଶୀଘ୍ର ଉଠିଲା ରାଜନ ।
ସ୍ନାନ କରି ଶୌଚ ହୋଇ ସାରି ନିତ୍ୟକର୍ମ
ଆସ୍ଥାନରେ ବିଜେକଲା ବିଲଙ୍କା ରାଜନ ।
ରାଉତ ମାହୁନ୍ତ ପଏଦାରଙ୍କୁ ଡାକିଲା
ବେଗେ ମୋର ସୈନ୍ୟସାଜ ବୋଲି ଆଜ୍ଞାଦେଲା
ରାମକୁ ମାରିବା ସ୍ୱର୍ଗପୁରକୁ ଭାଙ୍ଗିବା
ଦେବତାମାନଙ୍କୁ ଅଗ୍ନିମଧ୍ୟେ ପକାଇବା ।
ମହାକୋପ ମୂର୍ତ୍ତି ହୋଇ ସେ ବିଲଙ୍କା ସାଇଁ
ଏକ ସହସ୍ର ଭୁଜରେ ଶାବଳ ଘେନଇ ।
ପାଞ୍ଚଶତ ଭୁଜେ ପାଞ୍ଚଶତ ଧନୁର୍ଦ୍ଧର
ପାଞ୍ଚଶତ ହାତେ ତାକୁ ଆକର୍ଷଣ କରି ।
ସହସ୍ର ଭୁଜରେ କେତେ ନାରାଚ ଧଇଲା ।
ଏକ ସହସ୍ର ମୁଣ୍ଡରେ ମୁକୁଟ ବାନ୍ଧିଲା । ୯ ।
ଖୀରକାଷ୍ଠ ପିନ୍ଧିଲାକ ଖୀରଲଙ୍କସାଇଁ
ସୁବର୍ଣ୍ଣ କୁଣ୍ଡଳ ତାର କର୍ଣ୍ଣେ ବିରାଜଇ ।
ଏକଗୋଟା ବ୍ୟାଘ୍ରଚର୍ମ ବାନ୍ଧିଲା କଟିରେ
ଫର ଫର ହୋଇ ଲାଞ୍ଜ ଉଡ଼େ ତା ଆଗରେ
ପାଟଛତ୍ର ବାଇଶଟା ହୋଇଲା ବାହାର
ସଙ୍ଗରେ ଅଛଇ ତାର ଲକ୍ଷେକ ଚାମର ।
ଗର୍ଜନ୍ତି ତର୍ଜନ୍ତି ଦୈତ୍ୟେ କରି ଘୋରନାଦ
ମେଘ ଗରଜନ ପ୍ରାୟେ କରନ୍ତି ଶବଦ ।

ଭୟେ ଦମ ଦମ ହୋଇ କମ୍ପେ ବସୁନ୍ଧରା
ପାତାଳେ କମ୍ପଇ ବାସୁକି ଯେ ଦଣ୍ଡଧାରୀ ।୫୬
ପ୍ରଭାତ ସମୟେ ଦୈତ୍ୟ ବାହାର ହୋଇଲା
ଉତ୍ତର ଦୁଆରେ ଧ୍ୱଜ ଥାଟ ଚଳାଇଲା ।
ଚତୁରଙ୍ଗ ଦଳ ତାର ହୋଇଲେ ବାହାର
ବାରଯୁଣ ରଥ ମାଡ଼ି ଗଲା ଅସୁର ।୫୮
ଗଗନ ମାର୍ଗକୁ ଶୀଘ୍ର ଧାଇଁ ଦଇତ
ସ୍ୱର୍ଗ ଭୁବନକୁ ରାଜା ଟେକ ଦେଲା ରଥ ।
ଦେଖିକରି ଦେବଗଣ ଚମତ୍କାର ହେଲେ
ଅମରାବତୀପୁରକୁ ଛାଡ଼ି ପଳାଇଲେ । ୬୦
ସେ ଅମରାବତୀପୁରେ ଅମରେ ମିଳିଲେ
ସୁଧର୍ମା ସଭାରେ ଇନ୍ଦ୍ର ଆଗରେ କହିଲେ ।
ଟଳ ଉ ଅଛନ୍ତି ଭୟେ ପାଇ ଦେବଗଣ
ଅପସରାମାନେ ଭୟେ କରନ୍ତି ରୋଦନ ।୬୨
ବ୍ରହ୍ମା ସୁରପତି ଯକ୍ଷ ବିଦ୍ୟାଧରଗଣ
ବୃହସ୍ପତି ବିଶ୍ୱକର୍ମା କୁବେର ବରୁଣ ।
ଅଗ୍ନି ନଇଋତ ଯମ ଅଶ୍ୱିନୀ କୁମାର
ଚନ୍ଦ୍ର ସୂର୍ଯ୍ୟ ଗ୍ରହଗଣ ଗନ୍ଧର୍ବ କିନ୍ନର ।୬୪
ପଳାଇଲେ ଦେବଗଣ କେହି ନ ରହିଲେ
ରଖ ରଖ ରଘୁନାଥ ସର୍ବେ ଡାକଦେଲେ ।
ବଳଙ୍କା ରାବଣ ଆସି ସ୍ୱର୍ଗପୁରେ ପଶି
ଦେବାଳୟମାନ ସବୁ ପକାଇଲେ ନାଶି ।୬୬
ଧନ ସମ୍ପଦାଦି ସ୍ୱର୍ଗ ସବୁ କଲା ଜୁର
ଦେବସ୍ତ୍ରୀମାନଙ୍କୁ ତ ହରିଲେ ଅସୁର ।
ବିଧାତା ବୋଇଲେ ଦେବଗଣଙ୍କୁ ଅନାଇ
ବାରତା କୁହରେ ବେଗେ ଶ୍ରୀରାମଙ୍କୁ ଯାଇ ।୬୮
ସ୍ୱର୍ଗପୁର ଯାକ ଏବେ ନାଶିଲା ଅସୁର
ଦେବତାଙ୍କୁ ଦଇତ ଯେ କଲେ ଛାରଖାର ।
ଶୁଣିକରି ଦେବଗଣ ଚଳେ ବେଗ ହୋଇ ।
ଶ୍ରୀରାମଙ୍କ ସନ୍ନିଧାନେ ପ୍ରବେଶିଲେ ଯାଇ ।୭୦
ବୋଲନ୍ତି ଶୁଣିମା ହେଉ ଆହେ ରଘୁବୀର
ସ୍ୱର୍ଗପୁର ଏବେ ତୋର ନାଶିଲା ଅସୁର ।
ଦେବତାଙ୍କୁ ଦୈତ୍ୟପତି କଲେ ଛାରଖାର
ଶୁଣି ହନୁମନ୍ତକୁ ଡାକିଲେ ଧନୁଧର ।୭୨
ଚନ୍ଦ୍ରସେନକୁ ବୋଇଲେ ସାଜ ରଥବର
ସ୍ୱର୍ଗପୁରେ ଯାଇ ଆଜ ମାରିବା ଅସୁର ।

ଶୁଣିକରି ଚନ୍ଦ୍ରସେନ ସାଜିଲା ବିମାନ
ରଥରେ ବିଜୟେ କଲେ କୌଶଲ୍ୟା ନନ୍ଦନ ।୭୪
ବାମରେ କୋଦଣ୍ଡ ଶୋହେ ଡାହାଣରେ ଶର
ପର୍ବତ ଉପାଡ଼ି ହାତେ ଧରି ହନୁବୀର ।
ଗଗନ ମାର୍ଗରେ ଗଲେ ରାମଚନ୍ଦ୍ର ଧାଇଁ
ଧନୁ ଟଙ୍କାରିଲେ ପ୍ରଭୁ ଶୂନ୍ୟମାର୍ଗେ ଥାଇ ।୭୬
ଦେବତାଙ୍କୁ ଯେନ ଯୁଦ୍ଧ କରେ ସୁନାସୀର
ବଜ୍ର ପ୍ରହାରିଲେ ନେଇ ଅସୁର ଉପର ।
ରଘୁନାଥ ରଥ ଚଢ଼ି ଗଲେ ଗଗନରେ
ଦେଖିଲେକ ସ୍ୱର୍ଗପୁର ଘେରନ୍ତି ଅସୁରେ ।୭୮
ପାଞ୍ଚଲକ୍ଷ ବାଣ ବିନ୍ଧିଲେକ ରଘୁବୀର
କାଟି ପକାଇଲେ କୋଟି ଦୈତ୍ୟଙ୍କର ଶିର ।
ପଡ଼ିଲେ ଦଇତ ଯାଇ ସମର ସ୍ଥଳରେ
ଖଣ୍ଡ ଖଣ୍ଡ ହୋଇ ଛିଡ଼ି ପଡ଼ିଲେ ଅସୁରେ ।୮୦
ଭୟରେ ପଳାଇ ଯାଇ ସେ ଅସୁର ସୈନ୍ୟ
ରାଜାଙ୍କୁ ବୋଇଲେ ସ୍ୱର୍ଗେ ଆଇଲେ ଶ୍ରୀରାମ ।
ରାଜାର ଶରଣ ନେଲେ ଦୈତ୍ୟଗଣ ଯାଇ
ଦେଖି ସେ କୋପକଲା ବଳଙ୍କା ନୃପସାଇଁ ।୮୨
ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ନୃପତି ଧାଇଁଲା
ସହସ୍ର ଭୁଜରେ ଧନୁ ଧରିଣ ବିନ୍ଧିଲା ।
ସପତ ସହସ୍ର ବାଣ କଲାକ ପ୍ରହାର
ବାଣଘାତେ ଅଦୃଶ୍ୟ ହୋଇଲେ ବନକର ।୮୪
କଞ୍ଚିତ ବାଣରେ ତାହା କାଟିଲେ ଶ୍ରୀରାମ
ଶତପଦ୍ମ ବାଣ ଶୀଘ୍ର ବିନ୍ଧିଲା ରାଜନ ।
ଚଳିଲା ନାରାଚ ବେଗେ ବଜ୍ର ସମ ଜାଣି
ଅଭୁବୀ ବାଣରେ ତା କାଟିଲେ ରଘୁମଣି ।୮୬
ଦେଖିଣ ନୃପତି ଯେ ହୋଇଲା କୋପଭର
ଡାକିଲା କାହିଁରେ ଆଜ ଯିବୁ ରଘୁବୀର ।
ଏ ମୋର ଜଠକ ଭୁହ ନାଟିଲୁ କମାଇ
ମୁହିଁତ ତୋହର କିଛି ଦୋଷ କରିନାହିଁ ।୮୮
ଶ୍ରୀରାମ ବୋଇଲେ ଏହି ଶିକ୍ଷା ଅଛି ମୋର
ଯହିଁ ତହିଁ ଦେଖିଲେ ମୁଁ ମାରଇ ଅସୁର ।
ଦଇତ୍ୟାରି ବୋଲି ଏକ ନାମ ଅଛି ପାଇ
ଦଇତ୍ୟ ଦେଖିଲେ ମୁହିଁ ସମ୍ମୁଳେ ନାଶଇ ।୯୦
ଦଇତ୍ୟ କହଇ ବେଗେ ପଳାରେ ଶ୍ରୀରାମ
ଏ ସୁବା କାଳରେ କମ୍ପା ପାଇବୁ ମରଣ ।

ରାଜପୁତ୍ର ଅଟୁ ତୁମ୍ଭେ ଅତି ସୁକୁମାର
କମ୍ପାଇଁ ପଶିଲୁ ଆସି ମୋର କଟକର ।
ଏତେ କହି ନରପତି ବଳୁଅଛି ବାଣ
ଛେଦନ କରନ୍ତି ବାଣେ ପ୍ରଭୁ ରଘୁଗଣ ।
ସାତପଦ୍ମ ରଥୀ ଥିଲେ ଗଗନ ମାର୍ଗରେ
ସେମାନେ ବେଢ଼ିଲେ ଯାଇ ହନୁମନ୍ତ ବୀରେ
ଶତେପଦ୍ମ କରଣ ସେ ବେଢ଼ିଲେକ ଯାଇ
ଶେଲ କୁନ୍ତ ଶାବଳ ଯେ ମାରନ୍ତି ଭୁହାଇ ।
ଅସିପତ୍ର ଗଦା ମୁଦ୍‌ଗର ଧରି କରେ
ସମସ୍ତେ ମାରନ୍ତି ବେଗେ ହନୁର ଦେହରେ
ଶାବଳ ପରଶୁ ଖିଷ୍ଣ ମୁନା ଯେ ମାରନ୍ତି
ଗର୍ଜନ୍ତି ତର୍ଜନ୍ତି ପୁଣି କେତେ ଗାଳି ଦ୍ୟନ୍ତି ।
ତାହା ଦେଖି ହନୁ ଶରୀରକୁ ବଢ଼ାଇଲା
ଶତେ ଗୁଣଯାଏ ସେହି ମୋଟ ହୋଇଗଲା
ଲାଙ୍ଗୁଡ଼କୁ ବଢ଼ାଇଲା ସହସ୍ର ଯୋଜନ
ଦଶହଂଶ ଦୈତ୍ୟ କୋପେ ଧରେ ହନୁମାନ ।
କଷ୍ଟିଡ଼ଇ ନେଇ ତାଙ୍କୁ ପର୍ବତ ଉପରେ
କାହାକୁ ତୋଳଣ ନେଇ ପିଟଇ ପଥରେ ।
କାହାକୁ ଧରଣ ବେନିଫାଳ ସେ କରଇ
ଅଙ୍ଗୁଳି ମାରଣ କାହା ନୟନ ଖୋଳଇ ।
କାହାର ଉପରେ ବୀର ମାରେ ଅଙ୍କୁପତ୍ର
କାହାର ଉପରେ ବୀର କରେ ମଳମୂତ୍ର ।
କାହାକୁ ଗୋଇଠା ପୁଣି କାହାକୁ ଖୁନ୍ଦାଏ
କାହାକୁ ସେ ହନୁମନ୍ତ ମାରଇ ବଧାଏ ।
କାହା ଗୋଡ଼ ଧରି ଦୁଇଫାଳ କରି ଚିରେ
କାହାର ମୁଣ୍ଡକୁ ଧରି ମୋଡ଼େ କ୍ରୋଧଭରେ
ଭୀଷଣ ସମର କରେ ହନୁମନ୍ତ ବୀର
ସପତ ଅର୍ବୁଦ ସୈନ୍ୟ କଲାକ ସଂହାର ।
ଲକ୍ଷ ଲକ୍ଷ ରଥ ଭାଙ୍ଗି କଲା ପୁଣି ଚୂର୍ଣ୍ଣ
ସାଅଲକ୍ଷ ରାଉତଙ୍କ ଘେନିଲା ପରାଣ ।
କାଦ୍ୟକାର ଯେତେ ଥିଲେ ଗଗନ ମାର୍ଗରେ
ହନୁମନ୍ତ ହସ୍ତେ ସେ ସକଳ ନାଶ ଗଲେ ।
ସୈନ୍ୟଙ୍କର ମୃତ୍ୟୁ ଦେଖି କ୍ରୋଧେ ନୃପବର
ହାହାକାର କରି ବେଗେ ଧାଇଁଲା ଅସୁର
ଶ୍ରୀରାମଙ୍କୁ ପଛକରି ଦଇତ ଧାଇଁଲା
ସହସେ ମୁଦ୍‌ଗର ହନୁମନ୍ତଙ୍କୁ ପିଟିଲା ।

ବାଜିବାରୁ ହନୁ ଅଙ୍ଗୁ ଅନଳ ଉଠିଲା
ପୁଣିନେଇ ପାଞ୍ଚ ଶହ ମୁଦ୍‌ଗର ପିଟିଲା ।
ପୁନରପି ପ୍ରହାରିଲେ ସାତଲକ୍ଷ ବାଣ
ଘାଏ ଘୁମାଇଲା ତହିଁ ଅଞ୍ଜନା ନନ୍ଦନ ।
ଗଗନ ମାର୍ଗରୁ ହନୁ ପଡ଼ିଲା ସାଗରେ
ରାମ ରଖ ବୋଲି ହନୁ ଡାକଇ ଶୂନ୍ୟରେ ।
ଏହା ଦେଖି ରଘୁନାଥ କୋଦଣ୍ଡ ଧରିଣ
ଅନ୍ତରୀକ୍ଷେ ଧାଇଁ ବାଣ ବନ୍ଧିଲେ ଶ୍ରୀରାମ ।
ବଜ୍ର ହସ୍ତେ ଧରିବେଗେ ଧାଇଁଲା ବାସବ
ଯକ୍ଷରକ୍ଷ ବିଦ୍ୟାଧର କିନ୍ନର ଗନ୍ଧର୍ବ ।
ତେତିଶକୋଟି ଦେବତା ସକଳେ ଧାଇଁଲେ
ସମସ୍ତେ ଦୈତ୍ୟକୁ ଯାଇ ଗଗନେ ବେଢ଼ିଲେ
ବୋଇଲା ସେ ଦୈତ୍ୟପତି ବ୍ରହ୍ମାମୁଖ ଚାହିଁ
କହୋ ବ୍ରହ୍ମା ଯାଇ ବେଦ ନ ପଢ଼ୁ କମ୍ପାଇ ।
ମଳିନ ବସନ କମ୍ପା ନ କରୁ କୁବେର
ଯମ କମ୍ପା ବାଡ଼ିଛାଟି ନ ଖଟେ ମୋହର ।
କରେ ଦେବଗଣେ ନଯା କମ୍ପାମୋ ଆସ୍ଥାନେ
ଆଜ ଖଣ୍ଡ ଖଣ୍ଡ କରି କାଟିବି ମୁଁ ବାଣେ ।
ତୁମ୍ଭେ କ ନ ଜାଣ ମୁଁ ଯେ ଲକ୍ଷେଶ୍ୱର ପୁଅ
କେଉଁ ବାପ ତୁମ୍ଭଙ୍କୁରେ ହୋଇଛି ସହାୟ ।
ଦେବତା ବୋଇଲେ ପୂର୍ବେ ତପ କରିଥିଲୁ
ଏତେ ଦିନ ଯାଏ ଏ ବଲଙ୍କା ଭୋଗକଲୁ ।
ଜାଣିବୁ ଏଣିକ ତୋର ଜୟ ନାହିଁ ଆଉ
ଅବଶ୍ୟ ତୋ ମୁଣ୍ଡ କାଟିବେରେ ରାମରାହୁ ।
ଶୁଣି ଥରହର ହୋଇ କମ୍ପେ ରାଜାଅଙ୍ଗ
ସଙ୍କଟ କାଳରେ ଯେସନ୍ତେ ଗର୍ଜଇ ପନ୍ନଗ
ଦ୍ୱି ସହସ୍ର ଭୁଜରେ ସେ ଖଡ଼ଗ ଧରିଲା
ଦେବତାଙ୍କ ଉପରକୁ କୋପେଣ ବନ୍ଧିଲା ।
ଏହାଦେଖି ପଳାଇଲେ ସର୍ବ ଦେବଗଣ
ବଜ୍ର ପ୍ରହାରିଲେ ଦୈତ୍ୟପରେ ସୁରଗଣ ।
ସାତକୋଟି ବାଣ ବନ୍ଧିଲେକ ରଘୁବୀର
ଅସୁର ଉପରେ ପଡ଼ି ସବୁ ହେଲା ଚୂର ।
ବଜ୍ର ସନ୍ଧିତରେ ବେନିଖଣ୍ଡ ହୋଇଗଲା
ଦେଖି ସୁନାସୀର ତହୁଁ ଅପସରି ଗଲା ।
ପର୍ବତାସ୍ତ୍ର ପ୍ରହାରିଲେ ପ୍ରଭୁ ରଘୁବୀର
ଅସୁର ଦେହରେ ସବୁ ଗିରି ହେଲା ଚୂର ।

ମୂଷଳ ବାଣେକ ପୁଣି ବନ୍ଧିଲେ ଶ୍ରୀରାମ
ବ୍ରହ୍ମଶକ୍ତି ବଜ୍ରଶକ୍ତି ପାଶୁପତ ବାଣ ।
ହାବଡ଼ା ବାଣେକ ରାମ ଗୁଣରେ ବସାଇ
ଦୈତ୍ୟ ଅଙ୍ଗେ ପ୍ରହାରିଲେ ରଘୁକୁଳ ସାଇଁ । 128
ପଡ଼ିଲା ସେ ଶର ଯାଇଁ ଦଇତ୍ୟ ଉପରେ
ଦେଖି ହନୁମନ୍ତ ବୀର ଧାଇଁଲା ସତ୍ୱରେ ।
ପର୍ବତ ଗୋଟିଏ ଉପାଡ଼ିଲା ହନୁମାନ
ପ୍ରହାରିଲା ନେଇ ତାହା ଦୈତ୍ୟ ଉପରେଣ ।
ଗିରିବର ବାଜି ତାର ରଥଗଲା ଭାଙ୍ଗି
ଭୂମିରେ ଦଇତ୍ୟବୀର ପଡ଼ିଲା ଗଲ୍‌ଗାଜ । 132
ଧାଇଁଯାଇଁ ହନୁମନ୍ତ ମାଡ଼ିଣ ବସିଲା
ବଜ୍ର ସମ ବିଧା ଗୋଟା ଗୁଣ୍ଡରେ ମାଇଲା ।
ବିଧାବାଜି ଦୈତ୍ୟ ଅଙ୍ଗ ଉଠେ ଅଗ୍ନିଜଳ
ଗଳଗାଜି କ୍ରୋଧଭରେ ଉଠେ ମହାବଳୀ । 134
ସହସ୍ରେ ମୁଣ୍ଡରେ ତାର ମୁକୁଟ ଯେ ଥିଲା
କୋପେ ହନୁମନ୍ତ ତାକୁ ମଚ୍ଛି ପକାଇଲା ।
ହନୁକୁ ଦଇତ୍ୟ ବୀର ଆକର୍ଷି ଧଇଲା
କାଖତଳେ ହନୁମନ୍ତ ବୀରକୁ ଯାକିଲା । 136
ତହୁଁ ଟଳି ନ ପାରିଲା ହନୁମନ୍ତ ବୀର
ଉଚ୍ଚସ୍ୱରେ ଡାକଦେଲା ରଖ ରଘୁବୀର ।
ଶୁଣିଣ ଧାଇଁଲେ କୋପେ ସେ କୋଦଣ୍ଡଧର
ଭୟଙ୍କର ମୂଷଳେକ କଲେକ ପ୍ରହାର । 138
ବାଣ ଦେଖି ଦୈତ୍ୟ ଦେଲା କରକୁ ବଢ଼ାଇ
ଶ୍ରୀରାମଙ୍କ ବାଣ ଭାଙ୍ଗି ଦେଲା ଫୋପଡାଇ ।
ପୁଣି ହାତେ ଧନୁଧରି ସେ କୋଦଣ୍ଡଧର
ମନ୍ତ୍ରଣ ବାବଲବାଣ କଲେକ ପ୍ରହାର । 140
ଅସୁର ଉପରେ ଯାଇ ପଡ଼ିଲା ସେ ବାଣ
ଘାଏ ଘୁମାଇ ପଡ଼ିଲା ବୀର ଦୈତ୍ୟରାଣ ।
ହନୁମନ୍ତ ବୀର ତହୁଁ ହୋଇଲା ବାହାର
ଗଗନ ମାର୍ଗରେ ଉଡ଼ୁଅଛି ହନୁବୀର । 142
ଚେତନା ପାଇଣ ଉଠି ସେ ବିଲଙ୍କା ସାଇଁ
ବିଲଙ୍କା ପୁରକୁ ଭୟେ ଗଲେକ ପଳାଇ ।
ପଛେ ଗୋଡ଼ାଇଲା ବୀର ଅଞ୍ଜନାର ବଳା
ଅନେକ ପର୍ବତ ତା ଉପରେ କଗୁଡ଼ିଲା । 144
ରଥ ଘୁଆଇଣ ତହୁଁ କୋଦଣ୍ଡ ଧାରଣ
ଅସୁର ବନ୍ଧିଲେ ବାଛି ବାଛି ଖରଣବାଣ ।

ପଳାଇ ନୃପତି ଭୟେ ପଶେ ଅନ୍ତଃପୁରେ
ରଘୁନାଥ ପଶିଲେ ତା କଟକ ଭିତରେ । 146
ହାବୋଡ଼ା ବାଣେକ ପୁଣି ବନ୍ଧିଲେ ଶ୍ରୀରାମ
ଜଗତୀ ଅଟ୍ଟାଳ ଭାଙ୍ଗି ସବୁକଲେ ଚୂର୍ଣ୍ଣ ।
ଚନ୍ଦ୍ରସେନ ବୋଲେ ପ୍ରଭୁ ଆଜ ଯୁଦ୍ଧଥାଉ
ପ୍ରଚଣ୍ଡ ପର୍ବତେ ଚାଲ ଯିବା ରାମ ରାହୁ । 148
ଏହାଶୁଣି ରଘୁନାଥ କୋପ ଶାନ୍ତ କଲେ
ବିଲଙ୍କା କଟକୁ ରାମ ବାହାର ହୋଇଲେ ।
ପ୍ରଚଣ୍ଡ ପର୍ବତେ ପ୍ରବେଶିଲେ ରଘୁବୀର
ରଥନେଇ ରଖିଲେକ ପର୍ବତ ଉପର । 150
ଚନ୍ଦ୍ରସେନ ଗନ୍ଧର୍ବଙ୍କୁ ଘେନ ସଙ୍ଗତରେ
ସ୍ନାନକଲେ ରଘୁନାଥ ପଶି ସମୁଦ୍ରରେ ।
ତର୍ପଣ ସାରଣ ବେଗେ କୋଦଣ୍ଡ ଧାରଣ
ପର୍ବତ ଉପରେ ଯାଇ ଉଠିଲେ କହନ । 152
ଫଳମୂଳ ଭୁଞ୍ଜିଲେକ ତିନିଜଣ ତହିଁ
ନିଶ୍ଚିନ୍ତରେ ବୃକ୍ଷମୂଳେ ଶୋଇଲେ ସେ ସାଇଁ
ଚନ୍ଦ୍ରସେନ ଶୋଇଲେ ସେ ପର୍ବତ ଉପରେ
ହନୁ ଶୁଏ ଶ୍ରୀରାମଙ୍କ ଚରଣ ତଳରେ । 154
ବଦନ୍ତି ଈଶ୍ୱର ଶୁଣ ଶୁଣ ଗୋ ପାର୍ବତୀ
ପଳାଇଣ ଅନ୍ତଃପୁରେ ପଶିଲା ନୃପତି ।
ରାଣୀମାନେ ଅର୍ଘ୍ୟଥାଳୀ ଆଗେ ଦେଲେନେଇ
ଚିନ୍ତାଭରେ ପଲଙ୍କରେ ବସେ ଲଙ୍କସାଇଁ । 156
ଘନ ଘନ ନିଃଶ୍ୱାସ ଛାଡ଼ଇ ନୃପବର
ତାହାଦେଖି ରାଣୀମାନେ ଯୋଡ଼ି ବେନିକର ।
ଏତେକଷ୍ଟ କମ୍ପାଇ ସହୁଛ ନୃପରାଣ
ଶ୍ରୀରାମଙ୍କ ପାଦେ ଯାଇଁ ପଶିବା ଶରଣ । 158
ଅକଣ୍ଟକ ରାଜ୍ୟଭୋଗ କରିବା ଗୋସାଇଁ
ସୁଖଭୋଗ କରିବା ନିଶ୍ଚିନ୍ତେ ଏଥେ ଥାଇ ।
ରାଜା ବୋଇଲା ଗୋ ମୋତେ ଇତର ନମଣ
ଶ୍ରୀରାମ ପାଦରେ ଯାଇ ପଶିବ ଶରଣ । 160
ରାଜାମାନେ ପୁଣି ମୋତେକି ବୋଲି ବୋଲିବେ
ଦେବତାମାନେ ଗୋମୋତେ କମ୍ପାଇଉଚ୍ଚରବେ
ସହସ୍ରେକ ଶିର ଆଉ ବହୁବ କମ୍ପାଇ 162
ଯଦ୍ୟପି ଜଣକୁ ଜିଣି ନ ପାରିଲି ମୁହିଁ ।
ଧିକ ମୋର ବଳବୀର୍ଯ୍ୟ ଧିକ ବୀରପଣ
ଜାଣିଲିଁ ରାଇ ମୋର କଲା ହେଲା ରଣ ।

ଯୁଦ୍ଧକୁ ଉଚରଣ ସେହି ନ କଲି ସମର
ନୋହିଲେ ରାମଙ୍କୁ କମ୍ପା ମୋର ଏତେ ଡର ।
ଏତେ ଭାଳି ପଲଙ୍କରେ ନୃପତି ଶୋଇଲା
ସେ ରାତ୍ରେରେ ରାଜା ଏକ ସ୍ୱପନ ଦେଖିଲା ।
ଶ୍ରୀରାମ ନାଶିଲା ମୋର ବଲଙ୍କା ଭୁବନ
ଲୁହାମଇ ବୁଲାଇଲା ପବନ ନନ୍ଦନ ।
କପାଳରୁ ବ୍ରହ୍ମଅଗ୍ନି କାଢ଼ି ଲଗାଇଲା
ବଲଙ୍କା ନଗର ମୋର ସବୁ ପୋଡ଼ିଦେଲା ।
ସ୍ତ୍ରୀ ପୁରୁଷ ଆଦି ସର୍ବେ ବିକଳ ହୁଅନ୍ତି
ରାଣୀମାନେ ସମସ୍ତେ ଯେ ରୋଦନ କରନ୍ତି ।
ଚେତନା ପାଇଣ ଉଠି ବସେ ନୃପବର
ସୁବାସିତ ଜଳେ ମୁଖ ପଖାଳି ଅସୁର ।
ଆସ୍ଥାନ ଉପରେ ରାଜା ଯାଇ ବିଜେକଲା
ରାଉତ ମାହୁନ୍ତ ସମସ୍ତଙ୍କୁ ଡକାଇଲା ।
ଭାଇ ପୁତ୍ର ସଙ୍ଗତରେ ନୃପତି ଭାଳଇ
କି ରୂପେ ମାରିବା ସେହି ରଘୁକୁଳ ସାଇଁ ।
ଶତଶିର ବୋଲେ ଆଜି ନ ଭାଳ ରାଜନ
କାଲି ରାମ ସଙ୍ଗେ ମୋର ହେବ ଘୋରରଣ
ମାରିବି ରାମଙ୍କୁ ମୁହିଁ କାଳିକା ସମରେ
ଏଥିପାଇଁ ଦେବ କମ୍ପା ଭାବୁଛ ମନରେ ।
ଶୁଣିଣ ନୃପତି ବଡ଼ ହରଷ ହୋଇଲା
ଆରେ ପୁତ୍ର ମୋରମାନ ଫେଡରେ ବୋଇଲା ।
ଶ୍ରୀରାମଙ୍କୁ ମାଇଲେ ମୁଁ ନିଶ୍ଚିନ୍ତ ହୋଇବି
ବଲଙ୍କା ନଗରେ ମୁହିଁ ସୁଖେ ବଳସିବି ।
ଶତଶିର ବୋଲେ ତାତ ଦିଅ ମୋତେ ପାନ
ଆନନ୍ଦ ହୋଇଲା ଶୁଣି ପୁତ୍ରର ବଚନ ।
ଶତଶିର ଶିରେ ଆଣି ମୁକୁଟ ବାନ୍ଧିଲା
ରାମଙ୍କୁ ମାଇଲେ ରାଜା କରିବି ବୋଇଲା ।
ରାଉତ ମାହୁନ୍ତେ ଶୁଣି ବୋଇଲା ଦଇତ୍ୟ
ପୁତ୍ରକୁ ରାଜ୍ୟରେ ଆଜି କଲି ଟିକାଇତ ।
ରାମକୁ ମାଇଲେ ମୁହିଁ କରିବି ରାଜନ
ହରଷ ହୋଇଲେ ଶୁଣି ପାତ୍ର ମନ୍ତ୍ରୀଗଣ ।

—※—

## ଶତଶିରର ପ୍ରଥମରେ ଯୁଦ୍ଧକୁ ଗମନ ଶମ୍ଭୁ, ନିଶମ୍ଭୁ, କଦମ୍ବ, ରମ୍ଭ, ଭୂମ୍ୟ, ବଲଙ୍କା ଦହନ ଓ ରାଣୀମାନଙ୍କ ରଥସହ ଅଗ୍ନିରେ ପତନ

ଏଥୁଅନନ୍ତରେ ସେହି ଶତଶିର ବୀର
ନୃପତି ଚରଣ ତଳେ କଲା ନମସ୍କାର ।
ସୈନ୍ୟ ସାଜ ବୋଲି ଆଜ୍ଞାଦେଲେ ବାରମ୍ବାର
ଗଉରବ କରି ତାଙ୍କୁ କହିଲ ଅପାର ।
ଯେତେକ ସୈନ୍ୟ ଅଛନ୍ତି ବଲଙ୍କା ଭୁବନେ
ଏହିକ୍ଷଣି ସଜ ହୋଇ ଆସନ୍ତୁ ଏ ସ୍ଥାନେ ।
ଏହା ଶୁଣି ସଜହେଲେ ରାଉତ ମାହୁନ୍ତ
ସୈନ୍ୟ ସେନାପତି ରଥୀ ପଦାତି ଅମାତ୍ୟ ।
ଗଜ ଅଶ୍ୱ ରଥ ଚତୁରଙ୍ଗ ବଳ ସୈନ୍ୟ
ବୀରମାନେ ସଜହୋଇ ମିଳିଲେ ବହନ ।
ବାଜିଲା ଦାଉଣ୍ଡି ଘୋଷ ଟମକ ନିଶାଣ
ବୀରବାଦ୍ୟ ଶବ୍ଦେ ପୃଥ୍ୱୀ କମ୍ପେ ଘନ ଘନ ।
ଶମ୍ଭୁ ଦଇତ୍ୟକୁ ପାଶେ ଡାକି ନୃପବର
ଗଉରବ କରି ତାକୁ କହିଲା ଅପାର ।
ପାନ ପରସାଦ ରାଜା ତାହାକୁ ଯେ ଦେଲା
ଶ୍ରୀରାମଙ୍କୁ ମାରି ହେଳା ନ କର ବୋଇଲା ।
ନିଶମ୍ଭୁ ଦୈତ୍ୟକୁ ରାଇ ବୋଲେ ନୃପମଣି
ଶ୍ରୀରାମକୁ ମାରିବୁ ତୁ ଗୁପତେ ମାରେଣି ।
ଯେମନ୍ତେ ମୋହର ଶତ୍ରୁ ବାବୁରେ ମରଇ
ଶ୍ରୀରାମ ହନୁକୁ ମାର ଉପାୟ ତିଆରି ।
ସୈନ୍ୟବଳ ଘେନି ତୁହି ପଶ୍ଚିମରେ ଥିବୁ
ଗୁପ୍ତେ ପିଠିଆଡ଼ୁ ଆସି ରାମକୁ ମାରିବୁ ।
ପାନ ପରସାଦ ଦେଇ ବିନସ୍ତ୍ରୀ କହିଲା
କଦମ୍ବା ପ୍ରଳମ୍ବା ଅମ୍ବା ଅସୁର ରାଇଲା ।
ସକଳ ବୃତ୍ତାନ୍ତ ତାଙ୍କୁ ବୁଝାଇ କହଇ
ଅଜସ୍ର ଗଡ଼ରେ ମୋର ଶତ୍ରୁ ଆସି ହୋଇ ।
ଯେମନ୍ତ ଶ୍ରୀରାମ ବାବୁ ହୁଅଇ ନିଧନ
ଏତେ କହି ନରପତି ତାଙ୍କୁ ଦେଲା ପାନ ।
ସୈନ୍ୟ ସବୁ ବାଣ୍ଟି ଦେଲା ବଲଙ୍କା ଅସୁର
ଶ୍ରୀରାମଙ୍କୁ ମାରିବାକୁ ତାହାର ବଗୁର ।
ଶତଶିର କୁମରକୁ ସୈନ୍ୟ ଦେଲା ବାଣ୍ଟି
ଗୈଖାର ତୁରଙ୍ଗ ଦେଲା ପାଞ୍ଚଶତ କୋଟି ।

ପଞ୍ଚଦଶ ସହସ୍ର ଯେ ମତ୍ତହସ୍ତୀ ଦେଲା
ଦ୍ୱାଦଶ ଅର୍ବୁଦ ପଦାତିକ ସମର୍ପିଲା ।
ସାତଲକ୍ଷ ଶ୍ୱାନ ଚତୁର୍ଦ୍ଦଶ ଲକ୍ଷ ସେନା
ଚଉରାଶି ଲକ୍ଷଦେଲା ବୀରବର ଜେନା । ୧୮
ଦ୍ୱାଦଶ ସହସ୍ର ଛତ୍ର ଦେଲାକ ଦଇତ
ତାର ସଙ୍ଗତରେ ଦେଲା ବାରଗୋଟି ରଥ ।
ସପ୍ତଦଶ କୋଟି ଦେଲା ଲୁହା ଧନୁଶର
ପ୍ରଳମ୍ବାକୁ ଦେଲା ରାଜା କୋଟିଏ କୁଞ୍ଜର । ୨୦
ତିନିଲକ୍ଷ ପଦାତିକ ପାଞ୍ଚଲକ୍ଷ ରଥୀ
ଏଗାର ଅର୍ବୁଦ ଦେଲା ଆଣି ସେନାପତି ।
ରାଜା ସମସ୍ତଙ୍କୁ ସୈନ୍ୟ ବାଣ୍ଟି କରି ଦେଲା
ସହସ୍ରେ ରାଉତ ଜଣେ ଜଣେ ସମର୍ପିଲା । ୨୨
ପଚିଶ ସହସ୍ର ରଥ ଅଯୁତେ ପଦାତି
ବାଦ୍ୟକାର ଦେଲା ପାଞ୍ଚସହସ୍ର ନୃପତି ।
ଶମ୍ଭୁ ରାକ୍ଷସକୁ ଦେଲା ପାଞ୍ଚକୋଟି ଯୋଦ୍ଧା
ଏଗାର ସହସ୍ର ମାଲ ଯୁଦ୍ଧରେ ପ୍ରସିଦ୍ଧା । ୨୪
ନବଲକ୍ଷ ବାଦ୍ୟକାର ଦେଲାକ ଅସୁର
ଏକୋଇଶ ଖର୍ବ ମହାବଳୀ ଫରିକାର ।
ମାର୍ଜ୍ଜାର ବାହନ ଚଢ଼ି ସାତଲକ୍ଷ ସେନା
ନଶମ୍ଭୁକୁ ଦେଲା ପୁଣି ସହସ୍ରେକ ଜେନା । ୨୬
ଏମନ୍ତେ ସୈନ୍ୟ ରାଜା ଯେ ବାଣ୍ଟିକରି ଦେଲା
ବାରଶତକୋଟି ମାଲ କଟକେ ରଖିଲା ।
ସମସ୍ତଙ୍କୁ ବୋଲେ ଯେବେ ମାରିବ ରାମଙ୍କୁ
ଶାଢ଼ୀ ସୁନାବଳା ବାଣ୍ଟିଦେବି ସମସ୍ତଙ୍କୁ । ୨୮
ଶୁଣିଣ ରାଉତ ଅତି ଆନନ୍ଦ ହୁଅନ୍ତି
ରାମଙ୍କୁ ମାରିବେ ବୋଲି ପ୍ରତିଜ୍ଞା କରନ୍ତି ।
ଅସ୍ତ୍ର ଶସ୍ତ୍ର ବୁଲାଇ ଧାମନ୍ତି ଗଜଗାଜ
ପର୍ବତ କନ୍ଦର ତାଙ୍କ ପାଦେ ଗଲା ଭାଜି । ୩୦
ଆଷାଢ଼ ମାସରେ ଯେହ୍ନେ ଗରଜଇ ଘନ
ତେସନ ଶବଦ କରୁଛନ୍ତି ସୈନ୍ୟଗଣ ।
ରାସ୍ତରେ ଟମକ ବାଦ୍ୟ ବାଜେ ଘନ ଘନ
ପ୍ରଚଣ୍ଡ ପର୍ବତେ ଥାଇ ଶୁଣିଲେ ଶ୍ରୀରାମ । ୩୨
ପଚ୍ଚରନ୍ତି ରାମଚନ୍ଦ୍ର ହନୁକୁ ଅନାଇଁ
ଲଙ୍କା କଟକେ ଘୋର ଶବଦ ଶୁଭଇ ।
ଟମକ ନିଶାଣ ଶବ୍ଦ ଶୁଭେ ଘନ ଘନ
ଯୁଦ୍ଧ କରିବାକୁ କିବା ବାହାରୁଛନ୍ତି ସୈନ୍ୟ ।

କାଲି ନିଶ୍ଚେ ଘୋରଯୁଦ୍ଧ ହେବରେ ମାରୁତି
ଅପମାନ ପାଇ ନିଜେ ଯାଇଛନ୍ତି ନୃପତି ।
ଚାଲ ବାବୁ ହନୁମନ୍ତ ବେଗେ ଚଳିଯିବା
ଲଙ୍କା ନଗରେ ଆଜ ଅଗ୍ନି ଲଗାଇବା । ୩୬
ଘର ଦ୍ୱାର ପୋଡ଼ିଦେବା ନିରୋଧିବା ଦ୍ୱାର
ଯେମନ୍ତେ ଦନୁଜ ବଳ ନୁହନ୍ତି ବାହାର ।
ଏହାଶୁଣି ହନୁମନ୍ତ କଲା ସନମତ
ଚିତ୍ରସେନକୁ ବୋଇଲେ ସାଜ ବେଗେ ରଥ । ୩୮
ଶୁଣି ଚିତ୍ରସେନ ବେଗେ ସାଜିଲା ବିମାନ
ଧନୁହସ୍ତେ ଗୁଣ ଚଢ଼ାଇଲେକ ଶ୍ରୀରାମ ।
ରଥରେ ବିଜୟ କଲେ ପ୍ରଭୁ ରଘୁବୀର
ହନୁକୁ ବୋଲନ୍ତି ଶୁଣ ପବନ କୁମର । ୪୦
ପଶ୍ଚିମ ଦ୍ୱାରକୁ ବାବୁ ଯାଅ ଏହିକ୍ଷଣି
କବାଟ ଭାଙ୍ଗିଣ ଗଡ଼େ ପଶରେ ପାବନ ।
ଉତ୍ତର ଦୁଆରେ ମୁହିଁ କରୁଅଛି ରଣ
ଯେମନ୍ତେ ଲଙ୍କା ପୁର ହୁଅଇ ଦହନ । ୪୨
ଶୁଣିଣ ଆନନ୍ଦ ହୋଇ ପବନର ବଳା
ପଶ୍ଚିମ ଦୁଆରେ ଯାଇ ମାରୁତି ମିଳିଲା ।
ଚିତ୍ରସେନ ରଥ ଚଳାଇଲା ଗଗନରେ
ବିମାନ ରଖିଲା ନେଇ ଉତ୍ତର ଦୁଆରେ । ୪୪
ଲକ୍ଷେକ ଅସୁର ଦ୍ୱାର ଆବୋରି ଅଛନ୍ତି
ଏକେ ଏକେ ସ୍ୱର୍ଗପୁର ଜିଣି ସେ ପାରନ୍ତି ।
ଦେଖିଣ ଶ୍ରୀରାମ ବେଗେ ଧନୁକୁ ଧଇଲେ
ମନଭେଦ ନାରାଚକୁ ମନ୍ତ୍ରିଣ ଛନ୍ଦିଲେ । ୪୬
ଚଳିଲା ନାରାଚ ବେଗେ ପବନହୁଁ ଖରେ
ଲକ୍ଷ ଲକ୍ଷ ବାଣ ଉଦେ ହେଲା ଗଗନରେ ।
ଯେତେକ ଅସୁର ସେହି ଦ୍ୱାର ଜଗିଥିଲେ
ମନଭେଦୀ ଶରଘାତେ ସକଳ ପଡ଼ିଲେ । ୪୮
ଖଣ୍ଡ ଖଣ୍ଡ ହୋଇ ତହିଁ ପଡ଼ିଲେ ଅସୁର
ହାକୋଡ଼ା ବାଣେକ ମାରି ପ୍ରଭୁ ରଘୁବୀର ।
ଦ୍ୱାରେ ଥିବା କବାଟକୁ ଭାଙ୍ଗିକଲେ ଚୂର
ଭିତରେ ପଶିଲେ ଯାଇ ସେ କୋଦଣ୍ଡଧର । ୫୦
ଚିତ୍ରସେନ ରଥବର ବାହେ ଘନ ଘନ
ପକ୍ଷୀପ୍ରାୟ ଉଡ଼ୁଅଛି ଗଗନେ ବିମାନ ।
ପଶ୍ଚିମ ଦୁଆରେ ଯାଇ ବୀର ହନୁମାନ
ଦେଖିଲା ସେ ଦ୍ୱାରେ ଛନ୍ତି ଦୁଇଲକ୍ଷ ସୈନ୍ୟ । ୫୨

ହନୁକୁ ଦେଖିଣ ସେହ୍ନ ପଶିଲେ ସମରେ
ଉଭୟଙ୍କର ଯୁଦ୍ଧ ହେଲା ପଶ୍ଚିମ ଦୁଆରେ ।
ଘୋର ଯୁଦ୍ଧେ ଅସୁରଙ୍କୁ ମାରେ ହନୁମାନ
ଭୟ ପାଇ ପଳାଇଲେ ଅସୁର ସଇନ । 54
ଲାଙ୍ଗେ ଦଶବଂଶ ହନୁ ଦଗାଣ୍ଡି ଧରଇ
କବାଟ ଉପରେ ତାଙ୍କୁ ନେଇ କଚାଡ଼ଇ ।
ମରରେ ଅସୁର ଏବେ ଯାଅ ଯମପୁର
ତୁମ୍ଭ କାଳଯମ ଜାଣ ପ୍ରଭୁ ରଘୁବୀର । 56
ଲାଙ୍ଗୁଡ଼େ ଗୁଡ଼ାଇ ଆଣି ପବନର ବଳା
ଗୋଟାକ ଉପରେ ନେଇ ଗୋଟା କଚାଡ଼ିଲା ।
ପଳାଇଲେ ଦୈତ୍ୟମାନେ ଛନ୍ନଛନ୍ନ ହୋଇ
ବାସଭଗ୍ନ ହେଲେ ପକ୍ଷୀ ଯେସନ ପଳାଇ । 58
ବାହୁଦଣ୍ଡ ମାରି ଦ୍ୱାର କବାଟ ଭାଙ୍ଗିଲା
କଟକ ଭିତରେ ଯାଇ ମାରୁତି ପଶିଲା ।
ବ୍ରହ୍ମଅଗ୍ନି ନିଜ କପାଳରୁ ଜାତ କରି
ଲାଙ୍ଗୁଡ଼େ ଘଷିଲା ତାହା ବେନି କରେ ଧରି । 60
ବ୍ରହ୍ମଅଗ୍ନି ଲାଙ୍ଗୁଡ଼ରେ ଧରି ହନୁବୀର
ବୁଲାଇ ପିଟିଲା ନେଇ ଅସୁରଙ୍କ ଘର ।
ଏ ଘରୁ ସେ ଘରେ ଡେଇଁ ଯାଏ ହନୁମାନ
ପ୍ରଜ୍ୱଳିତ ହୋଇ ଜଳଉଠେ ହୁତାଶନ । 62
ବଢ଼ିଅଧେ ବାଲଙ୍କାରେ ଲାଗିଲାକ ଯୁଇ
ପଳାନ୍ତି ଅସୁରମାନେ ଛନ୍ନଛନ୍ନ ହୋଇ ।
ଦଗାଣ୍ଡି ଧରଇ ବୀର ଅଞ୍ଜନା ନନ୍ଦନ
ଅନଳ ଭିତରେ ନେଇ ପକାଏ ବହନ । 64
ଅତ୍ୟନ୍ତ ବିକଳ ହୋଇ ଘୋର ରାବ ଦ୍ୟନ୍ତି
ପୂର୍ବ ଦ୍ୱାରେ ରଘୁନାଥ ରଥକୁ ଯୁଅନ୍ତି ।
ନୃପତିର ଆଟ ସବୁ ସଜ ହୋଇଥିଲେ
କି ଗୋଳ ବୋଲିଣ ଘରୁ ବାହାର ହୋଇଲେ । 66
ଦେଖିଲେ ବାଲଙ୍କାପୁରେ ଆଲୁଅ ଦିଶଇ
ହାଟ ଦାଣ୍ଡ ଘରଦ୍ୱାର ସମସ୍ତ ପୋଡ଼ଇ ।
କେ ବୋଇଲ ଏ ପୁରେ ଆସି ବିପତ୍ତି ପଡ଼ିଲା
କେ ବୋଲଇ କେଉଁପରି ଅନଳ ଲାଗିଲା 68
କେ ବୋଲଇ କୁହ କେଉଁ ବାଟରେ ଅଇଲା
କେ ବୋଲଇ ରାମ ଅବା କଟକେ ପଶିଲା ।
କେ ବୋଲଇ ରାମକୁ ଯେ ଖୋଜକରି ମାରି
ରଥଚଢ଼ି ଅସ୍ତ୍ରଧରି ଧାଇଁଲେ ଅସୁର । 70

ଯାଉଁ ଯାଉଁ ଶ୍ରୀରାମଙ୍କୁ ବାଟରେ ଭେଟିଲେ
ଦଶଂଶତ ଅର୍ବୁଦ ସେନା କୋପେ ଓଗାଳିଲେ ।
ଶତଶିରା ବୀର ଧାଏଁ ପାଦଗାମୀ ହୋଇ
ଦୁଇଶତ ଭୁଜେ ଶତ ମୁଦ୍‌ଗର ଉଠାଇ । 72
ରଥପରେ ଶ୍ରୀରାମଙ୍କୁ ଦେଖିଣ ଅସୁର
ମହାକୋପେ ପ୍ରହାରିଲା ଶତେକ ମୁଦ୍‌ଗର ।
ରଥ ଚକେ ବାଜି ଅସ୍ତ୍ର ଚୂର୍ଣ୍ଣ ହୋଇଗଲା
ଦୁଇଶ ଗୁରୁଜ ଧରି ରଥରେ ପିଟିଲା । 74
ଚାରି ପାରୁଶରେ ଦୈତ୍ୟବଳ ବେଢ଼ିଥିଲେ
ଶ୍ରୀରାମଙ୍କ ଉପରକୁ ନାରାଚ ବିନ୍ଧିଲେ ।
ଶତବାଣେ ରାମଚନ୍ଦ୍ର କାଟି ପକାଇଲେ
ଅସୁରଙ୍କୁ ତୀକ୍ଷ୍ଣ ମୁନା ନାରାଚ ବିନ୍ଧିଲେ । 76
ପଡ଼ିଲା ନାରାଚ ଯାଇ ଦୈତ୍ୟଙ୍କ ଉପରେ
ତିନି ସହସ୍ର ଅସୁର ପଡ଼ିଲେ ଭୂମିରେ ।
ଖଣ୍ଡ ଖଣ୍ଡ ହୋଇ ଦୈତ୍ୟ ଲୋଟିଲେ ଧରଣୀ
ପୁଣି ଶତବାଣ ରାମ ବିନ୍ଧିଲେକ ଟାଣି । 78
ଲକ୍ଷେକ ଅସୁର ପୁଣି ପଡ଼ିଲେ ଭୂମିର
ହାବୋଡ଼ା ବାଣେକ ପୁଣି ବିନ୍ଧ ରଘୁବୀର ।
ସହସ୍ରେକ ରଥ ଭାଙ୍ଗି ଚୂର୍ଣ୍ଣ କରିଦେଲେ
ଭୟରେ ରାକ୍ଷସ କେହି ଆଗେ ନ ରହିଲେ । 80
ପଳାନ୍ତି ଅସୁରଗଣ ପଛକୁ ନ ଚାହିଁ
ଗୋଡ଼ାଇଣ ବାଣ ବିନ୍ଧୁଛନ୍ତି ରଘୁସାଇଁ ।
ଦେଖି ଶତଶିରା ବୀର ଓଗାଳିଲା ଆସି
ଗଦାବର ବୁଲାଇଣ ପିଟିଲା ଆକର୍ଷି । 82
ଶତଭୁଜେ ଧନୁଧରି ଶତଭୁଜେ ବାଣ
ଶ୍ରୀରାମଙ୍କ ଉପରକୁ ବର୍ଷେ କରି ଟାଣ ।
ମନ୍ତ୍ରିଣ କଲୁଷୀ ବାଣ ମାରି ରଘୁବୀର
ହସ୍ତୁ ଶତ ଗୋଟା ଧନୁ କାଟିଲା ତାହାର । 84
ନିରସ୍ତ୍ର ହୋଇଣ ବୀର ଗଲା ଅପସରି
ପୁନଃ ପୁନଃ ବାଣ ବିନ୍ଧୁଛନ୍ତି ଚାପଧାରୀ ।
ଶମ୍ଭୁ ନିଶମ୍ଭୁ ଏ ବେନି ବାଟ ଓଗାଳିଲେ
ବାରଲକ୍ଷ ସୈନ୍ୟ ଘେନି ସମରେ ପଶିଲେ । 86
ଅନୁକ୍ଷଣେ ଘନ ଘନ ବାଣ ବିନ୍ଧୁଛନ୍ତି
ଜଳଧାରା ପ୍ରାୟେ ବାଣ ଗଗନୁ ଖସନ୍ତି ।
ଅମୋଘ ଶଳାକା ମାରି ପ୍ରଭୁ ରଘୁବୀର
କାଟି ପକାଇଲେ ଶମ୍ଭୁ ରାକ୍ଷସର ଶିର । 88

ବେନଖଣ୍ଡ ହୋଇ ଦୈତ୍ୟ ଭୂମିରେ ପଡ଼ିଲା
ଭାଇର ମରଣ ଦେଖି ନିଶମ୍ଭୁ ଧାଇଁଲା ।
ପାଞ୍ଚଲକ୍ଷ ବାଣ କୋପେ ବିନ୍ଧିଲା ଅସୁର
କଳ୍ପୁରି ବାଣରେ ନିବାରିଲେ ରଘୁବୀର ।
ଶତକେ ନାରାଚ ପୁଣି ଅସୁର ବିନ୍ଧିଲା
ସହସ୍ରେକ ବାଣ ତାର ଉପରେ ସନ୍ଧିଲା ।
ବାଣକୁ ଛେଦିଲେ ରାମ ଶକତି ପ୍ରହାର
ବିଶାଶଏ ବାଣ ଦୈତ୍ୟ ବିନ୍ଧିଲା ଓଟାର ।
ହାବୋଡ଼ା ବାଣେକ ପୁଣି ବିନ୍ଧିଲେ ଶ୍ରୀରାମ
ନିଶମ୍ଭୁ ଦୈତ୍ୟର ରଥ ହୋଇଗଲା ଚୂର୍ଣ୍ଣ ।
ସେ ହାବୋଡ଼ା ବାଣ ତହୁଁ ବେଗେ ଚଳିଗଲା
ନିଶମ୍ଭୁ ଅସୁର ମୁଣ୍ଡ କାଟି ପକାଇଲା ।
ପଡ଼ିଲା ଅସୁର ତଳେ ବେନଖଣ୍ଡ ହୋଇ
ଭୟରେ ସକଳ ସୈନ୍ୟ ଗଲେକ ପଳାଇ ।
ଅନୁକ୍ଷଣେ ଗୋଡ଼ାଇଣ ମାରନ୍ତି ଶ୍ରୀରାମ
ଲୁଡ଼ ଲୁଡ଼ ହୋଇ ରଣେ ପଡ଼ିଲେକ ସୈନ୍ୟ ।
ଗୋଟିଏ ଅସୁର ରାମ ଆଗେ ନ ରହିଲେ
ଶତଶିରା ସହିତେଣ ସର୍ବେ ପଳାଇଲେ ।
ନୃପତିର ସନ୍ନିଧାନେ ମିଳିଲେକ ଯାଇଁ
ଆଜ ସମସ୍ତଙ୍କୁ ରାମ ମାଇଲା ଗୋଡ଼ାଇ ।
ଶମ୍ଭୁ ନିଶମ୍ଭୁ ଏ ଦେନି ପଡ଼ିଲେ ସମରେ
ଅନଳ ଲଗାଏ ହନୁ ପଶି ଘରେ ଘରେ ।
ଏହାଶୁଣି ନରପତି ଚମତ୍କାର ହେଲା
କି ଉପାୟ କରିବଇଁ ମନେ ବିଚାରିଲା ।
ପୁତ୍ର ନାତି ଦୁହିତାକୁ ଥୁରରେ ବସାଇ
ରାଣୀ ମହାଦେଈଙ୍କୁ ସେ ସଙ୍ଗତରେ ନେଇ ।
ଗଗନ ମାର୍ଗରେ ରଖି ଧାଇଁଲା ଅସୁର
କ୍ରୋଧେ ଥରହର ହୋଇ କମ୍ପେ କଳେବର ।
ସହସ୍ର ଭୁଜରେ ଧରିଅଛି ଶରାସନ
ପାଦଭରେ କମ୍ପୁଅଛି ବିଲଙ୍କା ଭୁବନ ।
ଦେଖିଲା କଟକେ ତାର ଲାଗିଛି ଅନଳ
ଲୋକେ ବୋଲୁଛନ୍ତି ରଖ ରଖ ମହୀପାଳ ।
କେବୋଲଇ ବାବଆଲୋ କେହୋଲଇ ନନା
କେ ବୋଲେ ଉଦ୍ଧର ଏଥୁନଅ ମୋତେ କନା
କେହି ବା ପୁତ୍ରକୁ ନେଇ ପଳାଇ ଯାଆନ୍ତି
ବାଟ ନ ପାଇଣ ଅଗ୍ନି ଭିତରେ ପଶନ୍ତି ।

କେ ଘରୁ ବାହାର ହୋଇ ଯାଇ ନ ପାରଇ
କାହାର ଦୁଆରେ ଅବା ଲାଗିଅଛି ଜୁଇ ।
ଲାଙ୍ଗୁଳ ବେଢ଼ାଇଅଛି ଅଞ୍ଜନାର ସୁତ
ନିରୋଧ କରିଛି ଏଣେ ବିଲଙ୍କାର ବାଟ ।
ପଳାଇ ଯିବାକୁ ବାଟ କେଉଁଠାରେ ନାହିଁ
ବିକଳ ହୁଅନ୍ତି କେହି ନ ପାରନ୍ତି ଯାଇ ।
ଲୋକଙ୍କ ବିକଳ ରାଜା ସହି ନ ପାରିଲା
କ୍ରୋଧଭରେ ଏକଗୋଟା ମୁଦ୍‌ଗର ଧଇଲା ।
ବୁଲାଇଲା ତାକୁ ଦୁଇ ସହସ୍ର ହାତରେ
ପିଟିଲା ସେ ଦୈତ୍ୟପତି ମାରୁତି ଉପରେ ।
ଘାଏ ଘୁମାଇଲା ବୀର ପବନର ବଳା
ଘଡ଼ିକରେ ହନୁମନ୍ତ ଚେତନା ପାଇଲା ।
ମହାକୋପେ ଧାଇଁଲା ସେ ପବନର ସୁତ
ଅସୁରର ବକ୍ଷସ୍ଥଳେ କଲା ପଦାଘାତ ।
ସମ୍ଭାଳି ନ ପାରି ହନୁମାନ ପାଦଭର
ଏଗାର ଯୋଜନ ଦୂରେ ପଡ଼ିଲା ଅସୁର ।
ଗଗନ ମାର୍ଗକୁ ଚାହିଁଦେଲା ହନୁମାନ
ଦିବ୍ୟ ରଥ ଗୋଟାଏକ ରହିଛି ଶୂନ୍ୟେଣ ।
ତାହା ଦେଖି ବାମକର ବଢ଼ାଇଲା ହନୁ
ସମାନଙ୍କୁ ଧଇଲା ସେ ଅଞ୍ଜନାର ସୁନୁ ।
ପ୍ରଚଣ୍ଡ ଅନଳ ମଧ୍ୟେ ପକାଇଲା ଆଣି
ବିକଳ ହୋଇଣ ଉଚ୍ଚେ କାନ୍ଦିଲେ ତରୁଣୀ ।
ମର ଲୋ ଅସୁରୀ ବୋଲି ତହୁଁ ଚଳିଗଲା
ନଗ୍ରଯାକ ହନୁମନ୍ତ ଲାଞ୍ଜ ବଢ଼ାଇଲା ।
ଯେତେ ସ୍ତ୍ରୀ ପୁରୁଷ ତହିଁ ଦେଖେ ହନୁମାନ
ସମସ୍ତଙ୍କୁ ଅଗ୍ନି ମଧ୍ୟେ ପକାଏ ବହନ ।
ବାଳ ବୃଦ୍ଧ ଯୁବା ଆଉ ଯେତେ ନଗ୍ରେ ଥିଲେ
ସମସ୍ତଙ୍କୁ ହନୁ ଅଗ୍ନି ମଧ୍ୟେ ପକାଇଲେ ।
ଗୋଟିଏକ ତହିଁ ହନୁମନ୍ତ ନ ଛାଡ଼ଇ
ସଭିଙ୍କି ଧରିଣ ଅଗ୍ନି ଭିତରେ ପକାଇ ।
ମହାଘୋର ଶବ୍ଦ ଶୁଭୁଅଛି କଟକରେ
ରାମ ଯୁଦ୍ଧ କରୁଛନ୍ତି ଉତ୍ତର ଦୁଆରେ ।
ପ୍ରଳମ୍ବା ଦଇତ ଆସି ରାମଙ୍କୁ ଭେଟିଲା
କଦମ୍ବା ଅମ୍ବାକୁ ସେ ଘେନିଣ ଯୁଦ୍ଧକଲା ।
ବିନ୍ଧୁଛନ୍ତି ତିନବୀର ଲକ୍ଷ ଲକ୍ଷ ଶର
ଶ୍ରୀରାମ ଉପରେ ବାଣ ପଡ଼େ ନିରନ୍ତର ।

ଚନ୍ଦସେନଙ୍କୁ ଶ୍ରୀରାମ ଅଦୃଶ୍ୟ ହୋଇଲେ
ଜଳ ବୃଷ୍ଟି ପ୍ରାପ୍ତ ଦୈତ୍ୟ ବାଣ ବରଷିଲେ ।
ରାହ ପାଣ୍ଡୁଗଲା ଉଦେହେଲେ ଦିନକର
ଘୋର ଯୁଦ୍ଧ କରୁଛନ୍ତି ରଥେ ଚାପଧର ।। 126
ଲାଗିଲା ସମର ଦିଗ ହେଲା ଅନ୍ଧକାର
ଦେବତାଏ ଦେଖି ଭୟେ ହେଲେ ଥରହର ।
ଲକ୍ଷ ଲକ୍ଷ ମୁଣ୍ଡ ବାଣେ କାଟନ୍ତି ଶ୍ରୀରାମ
ରୁଧିର ନଦୀଏ ବହିଗଲା ତତକ୍ଷଣ । 128
ମୃତ୍ୟୁଶବ ପଡ଼ିଲା ଯେ ପର୍ବତ ଆକାରେ
ଯୋଲ ଭେଳା ପ୍ରାପ୍ତ ଶବ ଭାସିଲା ରୁଧିରେ ।
କଉଶି ବାଣେକ ରାମ ମାଇଲେକ ଟାଣି
ପ୍ରଳମ୍ବା ଅସୁର ମୁଣ୍ଡ ପକାଇଲେ ହାଣି ।। 130
ଛିଡ଼ିଗଲା ମୁଣ୍ଡ ତାର ପଡ଼ିଲା ଭୂମିରେ
ଦେଖି ହାହାକାର ଧ୍ୱନି କଲେକ ଅସୁରେ ।
ଭାଇର ମରଣ ଦେଖି ଅମ୍ବାସୁର ବୀର
ଶ୍ରୀରାମଙ୍କ ଉପରକୁ ବର୍ଷେ ତୀକ୍ଷ୍ଣ ଶର 132
ଶତଲକ୍ଷ ବାଣ କୋପେ ମାଇଲା ନଠାଇ
ଗଗନେ ଅଦୃଶ୍ୟ ହେଲେ ଛାୟାଦେବୀ ସାଇଁ ।
ରାମଙ୍କ ଉପରେ ଆସି ପଡ଼ନ୍ତେ ସେ ବାଣ
କଉଶି ବାଣେ ତା ନିବାରିଲେ ରଘୁରାଣ । 134
ହାବୋଡ଼ା ଶରେକ ପୁଣି ବିନ୍ଧିଲେ ରାଘବ
ନିବାରଣ କରି ନ ପାରିଲା ସେ ଦାନବ ।
ଅଚେତନ ହୋଇ ବୀର ପଡ଼ିଲା ଭୂମିରେ
ଚେତନା ପାଇଣ ପୁଣି ଧାଇଁଲା କ୍ରୋଧରେ ।। 136
ଲୁହାର ଗୁ ରୁଜ ଏକ ପିଟିଲାକ ନେଇ
ଶାବେଳ ଘେନିଣ କୋପେ ରାମଙ୍କୁ ପିଟଇ ।
ପାଶୁପତ ବାଣ ବିନ୍ଧି ପ୍ରଭୁ ରଘୁମଣି
ପ୍ରତାପୀ ଦୈତ୍ୟର ମୁଣ୍ଡ ପକାଇଲେ ହାଣି । 138
ବିମାନ ଚଳାଇ ତହୁଁ ଯାନ୍ତେ ଚାପଧାରୀ
ଧାଇଁଲା କଦମ୍ବା ହାତେ ଧନୁଶର ଧରି ।
ବୋଇଲା କେଣିକି ଯାଉଅଛୁରେ ମାନବା
ଆଜ ତୋତେ ସଞ୍ଜୀବନୀ ପୁର ଦେଖାଇବା । 140
ଏତେକହି ଶକତିଏ ମାଇଲା ନଠାଇ
ପାଞ୍ଚବାଣେ ସେ ଶକତି କାଟି ରଘୁସାଇଁ ।
ଇନ୍ଦ୍ର ଅସ୍ତ୍ର ପ୍ରହାରିଲେ ମଲା ସେ ଅସୁର
ହନୁକୁ ଭେଟିଲେ ପୂର୍ବଦ୍ୱାରେ ରଘୁବୀର । 142

ଦେଖିଲେ ମାରୁତି ତହିଁ ଲଗାଇଛି ଜୁଇ
ସୁତର ଗୃହପାଶରେ ଲାଙ୍ଗୁଡ଼ ବେଢ଼ାଇ ।
ଶ୍ରୀରାମଙ୍କ ପାଦେ ହନୁ କଲା ନମସ୍କାର
ବହୁତ ପ୍ରଶଂସା ତାକୁ କଲେ ରଘୁବୀର 144
ଧନ୍ୟ ଧନ୍ୟ ହନୁମନ୍ତ ଦେବକାର୍ଯ୍ୟ କଲୁ
ଏ ବିପତ୍ତି କାଳେ ଆସି ସାହା ମୋତେ ହେଲୁ
ସମର ନକର ଦେହ ହେଲାଣି ଆସକ୍ତ
ପ୍ରଚଣ୍ଡ ଗିରିକି ଚାଲ ଯିବା ହନୁମନ୍ତ । 146
କାଲିର ଯୁଦ୍ଧରେ ନଷ୍ଟେ ମରିବ ରାଜନ
ହେଉ ବୋଲି ସନମତ କଲା ହନୁମାନ ।
ବିଲଙ୍କାର ଗୃହପାଶେ ଅଗ୍ନି ଲଗାଇଲା
ଗଗନ ମାର୍ଗରେ ହନୁମନ୍ତ ଚଳିଗଲା । 148
ଶୂନ୍ୟରେ ଚଳାଇ ରଥ ନେଲା ଚନ୍ଦସେନ
ଅନଳ ଦେବତା ପୋଡ଼ି ବିଲଙ୍କା ଭୁବନ ।
ବିଲଙ୍କା ନଗରୁ ରାମ ବାହାର ହୋଇଲେ
ପ୍ରଚଣ୍ଡ ପର୍ବତ ପରେ ଯାଇ ବିଜେକଲେ । 150
ଦ୍ୱିତୀୟ ପ୍ରହର ହୋଇଅଛି ଦିନକର
ରଥରୁ ଉତୁରି ପ୍ରଭୁ ରଘୁକୁଳ ବର ।
ସମୁଦ୍ରେ ପଶିଣ ସ୍ନାନ ନିତ୍ୟକର୍ମ ସାରି
ପିତାଙ୍କ ତର୍ପଣ ସାରି ସେ କୋଦଣ୍ଡଧାରୀ । 15
ଫଳ ମୂଳ ଭୁଞ୍ଜିଲେକ ପର୍ବତ ଉପରେ
ଶୋଇଲେ ଶ୍ରୀରାମ ଯାଇ ବିଜୟା ରଥରେ ।
ଶୁଣ ଗୋ ପାର୍ବତୀ ଦେବୀ ବୋଲନ୍ତି ଶଙ୍କର
ରାମାୟଣ ଗ୍ରନ୍ଥ ଶୁଣି ପାପ କର ଦୂର । 154
ଶୁଣିଣ ପାର୍ବତୀ ଦେବୀ ଯୋଡ଼ି ବେନି କର
ବୋଇଲେ ହେ ବିଶ୍ୱନାଥ କହନ୍ତୁ ଉତ୍ତର ।
ନିଶ୍ଚିନ୍ତେ ବିଜୟା ରଥେ ଶୋଇଲେ ଶ୍ରୀରାମ
କେବଣ ଉତ୍ତର ପୁଣି କଲେ ନୃପରାଣ । 15
ଈଶ୍ୱର ବୋଇଲେ ହନୁ ଅଗ୍ନି ଲଗାଇଲା
ବିଲଙ୍କା ନଗର ଯାକ ସବୁ ପୋଡ଼ିଦେଲା ।
ଷୋଳଲକ୍ଷ ହସ୍ତୀ ତିନି ଅଯୁତ ସଇନ
ସାତସହସ୍ର ଘର ପୋଡ଼ିଦେଲା ହନୁମାନ । 158
ବାରକୋଟି ପାଞ୍ଚଖର୍ବ ତିନିଶ ଅଯୁତ
ସ୍ତ୍ରୀ ପୁରୁଷ ବଧକଲା ବୀର ହନୁମନ୍ତ ।
ପାଞ୍ଚପଦ୍ମ ବାଦ୍ୟକାର ପରାର୍ଦ୍ଧେ ଅସୁର
ପୋଡ଼ି ପକାଇଲା ଏତେ ସୈନ୍ୟ ହନୁବୀର । 160

ଏଗାର ଅୟୁତ ତିନିସହସ୍ର ପଦାତି
ସାତକୋଟି ପାଞ୍ଚ ଲକ୍ଷ ତିନିଶତ ରଥୀ ।
ଅୟୁତେ ମାର୍ଜ୍ଜାର ତହିଁ ସଙ୍ଗେ ପୋଡ଼ିଗଲେ
କେ ଗଣି ପାରିବେ ମୂଷା ମାଛି ସେତେ ମଲେ ।
ବ୍ୟାକୁଳ ହୋଇଣ ଲୋକେ କରନ୍ତି ରୋଦନ
ଅଗ୍ନିମୟ ହୋଇଅଛି ଲଙ୍କା ଭୁବନ ।
ଏହା ଦେଖି ନୃପତିଙ୍କୁ କରୁ ନ ସ୍ତୁତିଲ
ଦଶ ସହସ୍ର କର ଜଳ ଜପାନେ ଦାଇଲା ।
ରାଉତଙ୍କୁ ଗୃହିଁ ପୁଣି ବୋଲେ ନୃପମଣି
ଅଗ୍ନି ଲିଭାଅରେ ବେଗେ ପକାଇଣ ପାଣି ।
ରାଉତ ମାହୁନ୍ତ ଆଜ୍ଞା ପାଇ ବେଗେ ଗଲେ
ଯେ ଯାହାର ଘରେ ପଶି ଅଗ୍ନି ଲିଭାଇଲେ ।
ପୋଡ଼ିବାର ଦ୍ରବ୍ୟ ସବୁ ସମ୍ଭାଳି ରଖନ୍ତି
କହନ୍ତି ଈଶ୍ୱର ଶୁଣ ଶୁଣ ଗୋ ପାର୍ବତୀ ।
ତକ୍ଷଣେ ଭାଳଇ ବସି ଲଙ୍କା ରାଜନ
ରବି ଆସି ପରବେଶ ହେଲା ସେହିଦିନ ।
ଯେତେ ପାତ୍ର ମିତ୍ର ମନ୍ତ୍ରୀଗଣ ପୁତ୍ର ଭାଇ
ଆସ୍ଥାନ ଉପରେ ବସି ନୃପତି ଭାଳଇ ।
ମୋର ଶତ୍ରୁ ରାମ ମୋତେ ହେଲା ବଳୀୟାର
କେମନ୍ତେ ମୋ ଶତ୍ରୁ ନାଶ ଯିବରେ କୁମର ।
ଏକା ଜଣକରେ କେହି ନ ପାରିଲେ ଜିଣି
ଦେବତାଙ୍କ ଯୋଗୁଁ ସିନା ଅଇଲା ସେ ପୁଣି ।
ଏଡ଼େ ବଡ଼ ରାଜ୍ୟ ମୋର କଲା ଛାରଖାର
ସୈନ୍ୟବଳ ସମସ୍ତଙ୍କୁ ନାଶିଲା ମୋହର ।
କି ବୁଦ୍ଧି କରିବ କୁହ ପଚାରେ ରାଜନ
ଉବୁରା ଅଛନ୍ତି ବାବୁ କେତେ ଆଉ ସୈନ୍ୟ ।
ଶୁଣିଣ ନିଶିଗ୍ରାହିର ଗଣନା କରଇ
ପଞ୍ଚଦଶ ପଦ୍ମ ଆଉ ରାଉତ ଅଛଇ ।
ଆହୁରି ଅଛନ୍ତି ଅଶୀକୋଟି ମହାବୀର
ପଦାତିକ ସୈନ୍ୟ ଛନ୍ତି ବିଂଶତିସାଗର ।
ବାରଲକ୍ଷ ପାଇକ ଯେ ଏକୁ ଏକ କଡା
ସାତ ପଦ୍ମ ଅଛନ୍ତି ଯେ ହସ୍ତୀ ମଦମତ୍ତ ।
ବାଦ୍ୟକାର ପାଞ୍ଚଦଶ ସହସ୍ର ଅଛନ୍ତି
ଏହା ଶୁଣି ନୃପବର ସୈନ୍ୟଙ୍କୁ କହନ୍ତି ।
ଗୃହଦ୍ୱାର କବାଟକୁ ବନ୍ଦ କରିଦେଇ
ଯେ ଯାହାର ଅସ୍ତ୍ରଧରି ଆସ ସଜ ହୋଇ ।

ଏହି ଲଙ୍କା ନଗରେ କେହି ନ ରହିବ
ସମସ୍ତେ ଶ୍ରୀରାମ ସଙ୍ଗେ ସମର କରିବ ।
ଶୁଣିଣ ରାଉତମାନେ ସନମତ କଲେ
ଏତେ କହି ଅନ୍ତଃପୁରେ ରାଜା ଚଳିଗଲେ ।
ଏ ସମୟେ ହାତଯୋଡ଼ି କହଇ ଉଗର
ଭୋ ଦେବ ଶୁଣିମା ହେଉ ଲଙ୍କା ଈଶ୍ୱର ।
ରାଣୀଏ ନାହାନ୍ତି ଦେବ ତୋର ଅନ୍ତଃପୁରେ
ବିମାନ ସହିତ କପି ବାନ୍ଧି ଲଙ୍ଗୁଡ଼ରେ ।
ଜଳନ୍ତା ଅନଳ ମଧ୍ୟେ ଦେଲାକ ପକାଇ
ନିର୍ଦ୍ଦୟ ବାନର ତାର ଟିକେ ଦୟା ନାହିଁ ।
ପୁନ୍ନାତି ଦୁହିତାରୁ ଏକ ନ ରଖିଲା
ଅଗ୍ନିରେ ପକାଇ ସେହି କପି ପଳାଇଲା ।
ଏହା ଶୁଣି ନରପତି ହେଲା କୋପାନଳ
ରାଣୀଙ୍କର ବଧ ଶୁଣି ହୋଇଲା ବ୍ୟାକୁଳ ।
କି କରିବ ବୋଲି ମନେ ଭାଳଇ ରାଜନ
କେମନ୍ତେ ମାରିବ ଦଶରଥର ନନ୍ଦନ ।
ଏଥୁଅନନ୍ତରେ ଶୁଣ ଦେବୀ ଗୋ ପାର୍ବତୀ
ପ୍ରଚଣ୍ଡ ପର୍ବତେ ଶୋଇଥିଲେ ରଘୁପତି ।
ଚତୁର୍ଦ୍ଦଶ ଦଣ୍ଡ ଭୋଗ ହୋଇଥିଲା ରାତ୍ର
ଭାଳନ୍ତି ହନୁକୁ ଯେତେ ପ୍ରଭୁ ରଘୁନାଥ ।
କେମନ୍ତେ ମରିବ ଦୈତ୍ୟ କହ ହନୁମାନ
ବଡ଼ ଯୋଦ୍ଧା ଶତଶିର ରାଜାର ନନ୍ଦନ ।
ସବୁଠୁଁ ନିଶିଚର ଦୈତ୍ୟ ବଳେ ବଳୀୟାର
ତାହାକୁ ମାରିଲେ ଜୟ ହୋଇବ ମୋହର ।
ହନୁମନ୍ତ ବୋଲେ ଦେବ ଭାଳୁଛ କପାଇଁ
ଅବଶ୍ୟ ମରିବ ଯୁଦ୍ଧେ ନୃପତିର ଭାଇ ।
ଏହା ଶୁଣି ରଘୁନାଥ ହୋଇଲେ ମଉନ
ରାତି ପାହିଗଲା ତହୁଁ ଉଠିଲେ ବହନ ।
ସ୍ନାନ ନିତ୍ୟକର୍ମ କଲେ ସମୁଦ୍ର ଭିତରେ
ତରପଣ ସାରି ବସି ପର୍ବତ ଉପରେ ।
ଫଳମୂଳ ଭୁଞ୍ଜି ସୁସ୍ଥ ହେଲେ ରଘୁସାଇଁ
ଈଶ୍ୱର କହନ୍ତି ଶୁଣ ଶୁଣ ପ୍ରାଣସହି ।

—*—

## ଶତଶିରର ପୁନରାୟ ଯୁଦ୍ଧକୁ ଗମନ ଓ ମୃତ୍ୟୁ

ଶୋକଭରେ ଅନ୍ତଃପୁରେ ନ ଗଲା ନୃପତି
ସେ ଦିନ ଆସ୍ଥାନେ ରହି ପୁହାଇଲା ରାତି
ରବି ପ୍ରଭାତରୁ ଉଠି ସୈନ୍ୟଙ୍କୁ ରାଇଲା
ଅନେକ ବନସ୍ତୀ ହୋଇ ବୁଝାଇ କହିଲା । 2
ଯେତେ ଅଛ ଏ ନଗରେ ସୈନ୍ୟ ପଏଦାର
ରାଉତ ମାହୁନ୍ତ ଫରାକାର ବାଦ୍ୟକାର ।
ହିଶିରା ମୋହର ଭାଇ ଶତଶିରା ପୁତ୍ର
କିଏ ମୋତେ ମାରିଦେବ ରାମ ହନୁମନ୍ତ । 4
ଏଡ଼େ ବଡ଼ ରାଜ୍ୟ ମୋର ହେଲା ହତଶିରା
ଏକା ଜଣକରେ ଧ୍ୱଂସ କଲା ଏହି ପୁରୀ ।
ବୀର ମହାବୀର ଅଛ ଯେତେକ ମୋହର
କହ କିଏ ମାରି ଦେବ ମୋତେ ରଘୁବୀର । 6
ଶୁଣି ଶତଶିରା ବୋଲେ ବେନିକର ଯୋଡ଼ି
ହେଦେବ ବାନରଗୋଟା ନଗ୍ର ଦେଲା ପୋଡ଼ି
କୁଟୁମ୍ବ ସହିତେ ପୁଣି ମାଇଲା ଆମ୍ଭର
ଆଜ ମୁଁ ମାରିବି ଆଜ୍ଞା ଦିଅ ନୃପବର । 8
ଶ୍ରୀରାମ ହନୁକୁ ନିଶ୍ଚେ ମାରିବି ମୁଁ ଆଜ
ମୋହର ପ୍ରତିଜ୍ଞା ଆଜ ବୁଝ ଦୈତ୍ୟରାଜ ।
ଯେବେ ନ ମାରିବି ମୁହିଁ ଆଜ ରଘୁ ସାଇଁ
ତୋହର ନଗ୍ରକୁ ଫେରି ନ ଆସିବି ମୁହିଁ । 10
ଶୁଣିଣ ବିଲଙ୍କାପତି ହରଷ ହୋଇଲା
ଏ ମୋହର ମାନ ପୁତ୍ର ରଖରେ ବୋଇଲା ।
କୋଳକରି ଆଣି ପାଶେ ବସାଇ ରାଜନ
ବାରମ୍ବାର ପୁତ୍ର ମୁଖେ ଦେଲାକ ଚୁମ୍ବନ । 12
ଯେମନ୍ତେ ମରଇ ବାବୁ ଯୁଦ୍ଧେ ରଘୁ ବୀର
ତେମନ୍ତେ ଉପାୟ କରି ବାନରକୁ ମାର ।
ଅକଣ୍ଟକ ରାଜ୍ୟ ଭୋଗ କରରେ ନନ୍ଦନ
ଏତେ ବୋଲି ପୁତ୍ର ହସ୍ତେ ଦେଲା ଗୁଆପାନ । 14
ରାଉତକୁ ବୋଇଲାରେ ସୈନ୍ୟସାଜ ଯାଇ
ଶ୍ରୀରାମ ହନୁକୁ ଆଜ ମାରିବଇଁ ମୁହିଁ ।
ଶତଶିରା ଆଜ୍ଞା ପାଇ ଅସୁରେ ଚଳିଲେ
ସୈନ୍ୟସାଜବୋଲି ନଗ୍ରେ ଘୋଷଣାକୁଦେଲେ । 16
ବିଜଘୋଷ ଦାଉଣ୍ଡି ଯେ ଠମକ ନିଶାଣ
ନାନାବିଧ ବୀରବାଦ୍ୟ ବାଜେ ଘନ ଘନ ।
ସଜ ହୋଇ ଆସିଲେ ଯେ ରାଉତ ମାହୁନ୍ତ
ପାଇକ ଯେ ପଏଦାର ଗଜ ଅଶ୍ୱ ରଥ । 18
ବାଟ ଘାଟ ପୂରିଗଲା ପଦାତି ସୈନ୍ୟରେ
ରାଉତେ ବସି ଆସିଲେ ଅଶ୍ୱଙ୍କ ଉପରେ ।
ଗଜଙ୍କ ଉପରେ ଯାଇ ମାହୁନ୍ତେ ବସିଲେ
ଶାବେଳୀ ଲଙ୍କିଆ ଅସିପତ୍ର ଯେ ଘେନିଲେ । 20
ଭଲ ଖାଣ୍ଡଶୂଳ ଘେନ ଧାମନ୍ତ ଅସୁର
ସଜ ହୋଇ ବାହାରିଲା ରାଜାର କୁମର ।
ରଥର ଉପରେ ଶତଶିରା ବିଜେ କଲା
ଶତଭୁଜେ ଶତଗୋଟା ଶାବଳ ଘେନିଲା । 22
ଆଉ ଶତଭୁଜେ ପୁଣି ମୁଦ୍‌ଗର ଧଇଲା
ଶତଶିରେ ବୀର ଶତ ମୁକୁଟ ବାନ୍ଧିଲା ।
ଈଶ୍ୱର ବୋଇଲେ ଦେବୀ ପାର୍ବତୀ ଗୋ ଶୁଣ
ଉତ୍ତର ଦୁଆର ଦେଇ ବାହାରିଲେ ସୈନ୍ୟ । 24
ଏଗାର ଯୋଜନ ପଥ ମାଡ଼ିଣ ଧାମନ୍ତ
ସୈନ୍ୟର ଗହଳେ ପୃଥ୍ୱୀଦେବୀ ଚମକନ୍ତ ।
ଗହଗହ ଶବ୍ଦ ଶୁଭେ ବିଲଙ୍କା ନଗ୍ରରେ
ସମସ୍ତେ ବୋଲନ୍ତି ମାରି ରାମଙ୍କୁ ସମରେ । 26
ଘୋର ଗରଜନ କରି ବାହାରିଲେ ସୈନ୍ୟ
ପର୍ବତ କନ୍ଦର ପାଦେ ହେଉଅଛି ଚୂର୍ଣ୍ଣ ।
ପ୍ରଳୟ କାଳରେ ଯେହ୍ନେ ସିନ୍ଧୁ ଗରଜଇ
ସେହି ପରକାରେ ବାଦ୍ୟନାଦ ଶୁଭୁଛଇଁ ।
ହନୁକୁ ବୋଲନ୍ତି ପ୍ରଭୁ ଶ୍ରୀରଘୁନନ୍ଦନ
ଅଇଲା କି ଆଉ ଘେନି ବିଲଙ୍କା ରାଜନ ।
ବେଗେ ଯାଇ ରଥ ସଜକରି ଚନ୍ଦ୍ରସେନ
ଶୁଣିଣ ପର୍ବତେ ଉଠି ଦେଖେ ହନୁମାନ ।
ଶ୍ରୀରାମଙ୍କୁ ବୋଲେ ପ୍ରଭୁ ଧନୁ କରେ ଧର
ଗୋଟାଏ ଉବୁରି ଯେହ୍ନେ ନ ଯାନ୍ତି ଅସୁର
ଏତେ ବୋଲି ବୀରମଣି ପଶ୍ଚିମକୁ ଗଲା
ପର୍ବତ ଭିତରେ ଯାଇ ଗୁପତେ ରହିଲା ।
ବିଜୟ ବିମାନ ସାଜ ଦେଲା ଚନ୍ଦ୍ରସେନ
ମଙ୍ଗଳା ସୁମରି ବିଜେ ତହିଁରେ ଶ୍ରୀରାମ ।
ଧନୁ ହସ୍ତେ ରାମଚନ୍ଦ୍ର ଗୁଣ ଚଢ଼ାଇଲେ
ବ ରବାର ଆମଞ୍ଚଣ ଧନୁ ଟଙ୍କାରିଲେ ।
ଧନୁ ଟଙ୍କାରନ୍ତେ ତିନପୁର ଉଚ୍ଛୁଳିଲା
ଶୁଣିଣ ଅସୁର ଆଉ ଚମକି ପଡ଼ିଲା ।

ଘନ ଘନ ଧନୁ ଟଙ୍କାରନ୍ତେ ରଘୁପତି
ଦୁଲୁ ଦୁଲୁ ହୋଇ କମ୍ପିଗଲା ବସୁମତୀ ।
କ୍ରୋଧେ ବୈଷ୍ଣବ ରୂପକୁ ରାମ ଧ୍ୟାନ କଲେ
ସୃଷ୍ଟି ସୃଷ୍ଟି ଶତରୁଦ୍ର ତେଜକୁ ଧଇଲେ ।
ସେ ତେଜରେ କମ୍ପମାନ ହେଲା ତିନିପୁର
ସହିଁ ନ ପାରିଲେ ତାକୁ ସବୁ ରକ୍ଷବୀର ।
ଦେଖିକରି ହନୁମନ୍ତ ଭକ୍ତିରେ ନମଇଁ
ସାମାନ୍ୟ ଯୁଦ୍ଧରେ ପ୍ରଭୁ କୋପ କାହିଁପାଇଁ ।
ବଦନ୍ତି ଈଶ୍ୱର ଶୁଣ ଦେବୀ ଗୋ ପାର୍ବତୀ
ଧନୁର ଟଙ୍କାର ଶୁଣି ଅସୁର ଗର୍ଜନ୍ତି ।
ଏହି ରାମ ବୋଲି ବେଗେ ଧାଇଁଲେ ଅସୁର
ପ୍ରଚଣ୍ଡ ଗିରିକି ବେଢ଼ି ଗଲେ ଶତେପୁର ।
ଶ୍ରୀରାମଙ୍କୁ ଲକ୍ଷ୍ୟକରି ବିନ୍ଧୁଛନ୍ତି ବାଣ
କାଳସର୍ପ ପ୍ରାୟେ ଗରଜନ୍ତି ଘନ ଘନ ।
ଦେଖିଣ କୋଦଣ୍ଡଧାରୀ ପ୍ରଭୁ ରଘୁବୀର
କ୍ରୋଧଭରେ ପ୍ରହାରିଲେ ସହସ୍ରେକ ଶର ।
ଶ୍ରୀରାମଙ୍କ ହସ୍ତୁ ସେହି ଅସ୍ତ୍ର ଚଳିଗଲା
ଦୁଇଶ ଅସୁର ମୁଣ୍ଡ କାଟି ପକାଇଲା ।
ଛିଡ଼ି ମୁଣ୍ଡମାନ ପଡ଼ି ଗଡ଼ିଲେ ଭୂମିରେ
ଦେଖି ହାହାକାର କଲେ ସକଳ ଅସୁରେ ।
ଏଗାର ସହସ୍ର ଯୋଦ୍ଧା ସମସ୍ତେ ଧାଇଁଲେ
ଶ୍ରୀରାମ ଉପରେ ତୀକ୍ଷ୍ଣ ଶର ବୃଷ୍ଟି କଲେ ।
ଦେଖିଣ କୋଦଣ୍ଡ କୋପେ ଧଇଲେ ଶ୍ରୀରାମ
ଅସୁରଙ୍କ ଉପରକୁ ବିନ୍ଧିଲେକ ବାଣ ।
ଏଗାର ସହସ୍ର ଯୋଦ୍ଧା ପଡ଼ିଲେ ଭୂମିରେ
ଦେଖି ଶତଶିରା ବୀର କମ୍ପେ ଥର ହରେ ।
ଶତଭୁଜେ ଧନୁଧରି ରାବଣର ବଳା
ଶତଲକ୍ଷ ବାଣ ଏକାବେଳେକେ ବିନ୍ଧିଲା ।
ଚଳିଲା ନାରାଚ ପବନର ଗତି ଜାଣି
କଉରି ବାଣରେ ତା କାଟିଲେ ରଘୁମଣି ।
କ୍ରୋଧଭରେ ଗରଜଇ ରାଜାର ତନୟ
ବାଣବୃଷ୍ଟି କରଇ ସେ ଜଳଧାରା ପ୍ରାୟ ।
ରଘୁନାଥଙ୍କ ଉପରେ ପଡ଼େ ଯାଇ ଶର
ଦିବସର ରଣଭୂଇଁ ଦିଶେ ଅନ୍ଧକାର ।
ଏହାଦେଖି କୋପକଲା ବୀର ହନୁମାନ
ଗଗନ ମାର୍ଗରେ ଧାଏଁ ପବନ ନନ୍ଦନ ।
ଅସୁର ରଥରେ ଉଠିଲାକ ହନୁ ଯାଇ
ନିର୍ଘାତ ସମାନ ବଜ୍ର ବିଧାଏ ମାରଇ ।
ବିଧାଘାତେ ଅସୁରର ଭାଙ୍ଗିଲା ବିମାନ
ଭୂମିଗତ ହୋଇଲା ସେ ରାବଣ ନନ୍ଦନ ।
ମାଡ଼ି ବସିଲା ତାହାକୁ ଅଞ୍ଜନାର ବଳା
ଏକଗୋଟା ମୁଥ ତାର ଗୁଣ୍ଡରେ ମାଇଲା ।
ମୁଥଘାତେ ଶତଶିରା ବୀର ମୂର୍ଚ୍ଛାଗଲା
ଦୁଇଗୋଡ଼ ଧରି ହନୁମନ୍ତ ବୁଲାଇଲା ।
ମାଳ ସୁନ୍ଦର ପର୍ବତେ କଚାଡ଼ିଲା ନେଇ
ଗିରିବର ଚୂର୍ଣ୍ଣ ହେଲା ବାଜି ତାର ଦେହୀ ।
ଘଡ଼ିଏକ ମୂର୍ଚ୍ଛା ହୋଇ ପଡ଼ିଲା ଅସୁର
ଧାଇଁ ଯାଇଁ ଆକର୍ଷିଣ ହନୁମନ୍ତ ବୀର ।
ଧରାଧରି ହୋଇ ଦୁହେଁ ଭୂମିରେ ଲୋଟିଲେ
ଭୁଜରେ ଭୁଜକୁ ପାଦେ ପାଦକୁ ଛନ୍ଦିଲେ ।
ବିଧା ମୁଥା ମରାମରି ହୋଇନ୍ତି ବେନିବୀର
ଅନଳ ହୁଅଇ ଜାତ ଅଙ୍ଗୁ ଦୁହିଙ୍କର ।
ତର୍ଜନ୍ତି ଗର୍ଜନ୍ତି ଗାଳି ଦିଆଦେଇ ହୋଇନ୍ତି
କଳକଳା ଶବ୍ଦକରି ପୁଣି ସେ ଧାମନ୍ତି ।
ଉତ୍ତର ଭାଗରେ ଯେଉଁ ସୈନ୍ୟ ରହିଥିଲେ
ଅଶୀକୋଟି ସୈନ୍ୟ ଯାଇଁ ରାମଙ୍କୁ ବେଢ଼ିଲେ ।
ଅନୁକ୍ଷଣେ ଅସ୍ତ୍ର ଶସ୍ତ୍ର କରନ୍ତି ପ୍ରହାର
ଛେଦନ କରନ୍ତି ଶସ୍ତ୍ର ସବୁ ରଘୁବୀର ।
ହଠାଇ ରାମକୁ ଯହୁଁ ବିନ୍ଧିଲେକ ବାଣ
ଦଶଦିଗ ଅନ୍ଧକାର ନ ଦିଶେ ଗଗନ ।
ଦେଖିଣ କୋଦଣ୍ଡଧାରୀ ପ୍ରଭୁ ରଘୁବୀର
କୋପଭରେ ବିନ୍ଧିଲେକ ଜ୍ୱାଳାବଳୀ ଶର ।
ପାଶୁପତ ବାଣ ପୁଣି ବିନ୍ଧିଲେ ଶ୍ରୀରାମ
ବ୍ରହ୍ମଶକ୍ତି ବଜ୍ରଶକ୍ତି ନାଗଫାଶ ବାଣ ।
ଚଳିଲେ ନାରାଚମାନେ ଆକାଶ ମାର୍ଗରେ
ବଜ୍ରପ୍ରାୟେ ପଡ଼ିଲେ ସେ ଦୈତ୍ୟଙ୍କ ଉପରେ ।
ଛିଡ଼ିଗଲା ମୁଣ୍ଡମାନ ପଡ଼ନ୍ତି ଭୂମିରେ
ବିଲଙ୍କାର ଯୁଦ୍ଧଭୂମି ପୂରିଲା ରୁଧିରେ ।
ଯମୁନା ମଧ୍ୟକୁ ସେହି ରକ୍ତ ବହିଗଲା
ସମୁଦ୍ରର ଜଳସବୁ ନାଲିଆ ଦିଶିଲା ।
ଦେଖିଣ ଅସୁର ସୈନ୍ୟ କୋପେ ଗଲେ ଜଳି
ଶ୍ରୀରଘୁନାଥଙ୍କୁ ମୁଖେ ଦେଉଛନ୍ତି ଗାଳି ।

ଆରେ ରେ ମାନବ ତୁମ୍ଭ ଆଜ ଯିବୁ କାହିଁ
ନଷ୍ଟେଁ ଯମ ଦରଶନ କରାଇବୁ ନେଇ ।
ହନୁକୁ ଛାଡ଼ିଣ ବେଗେ ଧାଇଁଲା ଦଇତ
ପର୍ବତ ଗୋଟାଏ ହସ୍ତେ ଉପାଡ଼ି ତୁରିତ ।
ଶ୍ରୀରାମଙ୍କ ରଥେ ତାହା ପିଟିଲାକ ନେଇ
ପୁଣି ହନୁମନ୍ତ ତାକୁ ଧଇଲାକ ଯାଇଁ ।
ପର୍ବତ ଛଡ଼ାଇ ହସ୍ତେ ପବନର ବଳା
ଶତଶିରା ବୀରପରେ ନେଇ କଚାଡ଼ିଲା ।
ମୁଣ୍ଡେ ପଡ଼ି ଚେଡ଼େବଡ଼ି ଗିରି ହେଲା ଚୂର
ଧନୁ ଧରି ରାମ ପ୍ରହାରିଲେ ଦଶ ଶର ।
ଦଇତ ହୃଦରେ ବାଣ ପଡ଼ିଲାକ ଯାଇଁ
ଅଙ୍ଗେ ବାଜି ଭଙ୍ଗିଗଲା ବେନି ଖଣ୍ଡ ହୋଇ ।
ଏହା ଦେଖି ଚମତ୍କାର ହୋଇଲେ ଶ୍ରୀରାମ
କୋପେଣ ବିନ୍ଧିଲେ ପୁଣି ଜ୍ୱାଳାବଳୀ ବାଣ ।
ଅସୁର ଅଙ୍ଗରେ ପଡ଼ି ହୋଇଗଲା ଚୂର୍ଣ୍ଣ
ଏହାଦେଖି ଭସ୍ମ କଲେ ଶ୍ରୀ ରଘୁନନ୍ଦନ ।
ଲୁହା ଧନୁ ଏକ କରେ ଧଇଲା ଅସୁର
ରାମଙ୍କ ଉପରେ ବାଣ କଲାକ ପ୍ରହାର ।
ପାଞ୍ଚଶ ସହସ୍ର ବାଣ ବିନ୍ଧିଲାକ ଟାଣି
କଭୂଷି ବାଣରେ ତା କାଟିଲେ ରଘୁମଣି ।
ଖଣ୍ଡ ଖଣ୍ଡ ହୋଇ ବାଣେ ପଡ଼ିଲେ ଭୂମିରେ
ଦେଖି ଶତଶିରା କୋପେ ଗରଜନ କରେ ।
ପୁଣି ଶ୍ରୀରାମଙ୍କୁ ବିନ୍ଧିଲାକ ଲକ୍ଷେ ବାଣ
କାଟି ପକାଇଲେ ତାହା କୋଦଣ୍ଡ ଧାରଣ ।
ପାଶୁପତ ବାଣ ଜ୍ୱାଳାବଳୀ ଅଗ୍ନିଶର
କୋପେଣ ବିନ୍ଧିଲେ ପୁଣି କୌଶଲ୍ୟା କୁମର ।
ଶୂନ୍ୟମାର୍ଗେ ବହ୍ନିମିଣ ନାଚିତ ଚଳିଲା
ଶତଶିରା ଦଇତ୍ୟର ହୃଦରେ ପଡ଼ିଲା ।
ଏକାବେଳେ ଛିଡ଼ିଗଲା ଶତଗୋଟା ଶିର
ପର୍ବତ ଉପରେ ମୁଣ୍ଡ ପଡ଼ି ହେଲା ଚୂର ।
ଘୋର ଗରଜନ କଲା ରାଜାର କୁମର
ଶବଦ ଘାତରେ କମ୍ପିଗଲା ତ୍ରିପୁର ।
ଏହା ଦେଖି ଦେବଗଣ ହରଷ ହୋଇଲେ
ଧନ୍ୟ ଧନ୍ୟ ରାମ ବୋଲି ବହୁ ପ୍ରଶଂସିଲେ ।
ଅସୁରକୁ ମାରି କୋପେ କୋଦଣ୍ଡ ଧାରଣ
ନିଃଶ୍ୱାସ ଛାଡ଼ିଲେ ଅତି ଉଚେ ଘନ ଘନ ।
ପଡ଼ିଲା ଅସୁର ପିଣ୍ଡ ଯେସନ୍ତେ ଗିରିବର
ଅଗ୍ନିବାଣେ ଦହି ପକାଇଲେ ରଘୁବୀର ।
ପବନାସ୍ତ୍ରେ ପୁଣି ତାକୁ ଦେଲେକ ଉଡ଼ାଇ
ସମୁଦ୍ର ଜଳରେ ରାମ ପକାଇଲେ ନେଇ ।
ଦେଖି ପୁରନ୍ଦର ଶିରେ ପୁଷ୍ପବୃଷ୍ଟି କଲା
ଧନ୍ୟ ଧନ୍ୟ ରାମଚନ୍ଦ୍ର ବୋଲି ପ୍ରଶଂସିଲା ।
ପଳାଇଲେ ଅସୁର ଯେ ଯାନମାନ ଛାଡ଼ି
ହନୁମାନ ଯୁଦ୍ଧ ତେଜି ଅଇଲା ବାହୁଡ଼ି ।
ସନ୍ଧ୍ୟାକାଳେ ଶ୍ରୀରାମଙ୍କୁ କଲା ଦରଶନ
ଆନନ୍ଦ ହୋଇଲେ ଦେଖି ଶ୍ରୀରଘୁନନ୍ଦନ ।
ଶ୍ରୀରାମ ବୋଇଲେ ମଲା ଶତଶିରା ବୀର
ଆବର ବୀରେକ ଅଛି ହିଶିରା ଅସୁର ।
ଏତେ ବୋଲି ରାମଚନ୍ଦ୍ର ସମୁଦ୍ରେ ପଶିଲେ
ସ୍ନାନ ତରପଣ ସାରି ପର୍ବତେ ବସିଲେ ।
ଫଳ ମୂଳ ଭୁଞ୍ଜି ସୁଖେ କଲେକ ଶୟନ
ବନେ ପଶି ଫଳ ମୂଳ ଖାଏ ହନୁମାନ ।
ଚନ୍ଦ୍ରସେନ ଗନ୍ଧର୍ବଙ୍କୁ ଫଳ ମୂଳ ଦେଲା
ଭୁଞ୍ଜି ଚନ୍ଦ୍ରସେନ ରଥ ଉପରେ ଶୋଇଲା ।
ଏଥୁ ଅନନ୍ତରେ ଦେଖ ଶାକମ୍ଭରୀ ଶୁଣ
ଭଗ୍ନବଳ ଭଟ୍ଟେଁ ବେଗେ ଗଲେ ପଳାଇଣ ।
ସମସ୍ତଙ୍କ ନୟନରୁ ବହୁଅଛି ଲୁହ
ଆସ୍ଥାନ ଉପରେ ଥିଲା ଲକ୍ଷେଶିରା ପୁଅ ।
ପାଦତଳେ ପଡ଼ି ସର୍ବେ ଜଣାଇଲେ ଯାଇ
ଆଜଠାରୁ ବୀରଶୂନ୍ୟ ହେଲା ଲଙ୍କାଭୂଇଁ ।
ହେ ଦେବ ମହିମା ଶୁଣ ବିଲଙ୍କା ଈଶ୍ୱର
ଶତଶିରା ବୀର ଯୁଦ୍ଧେ ପଡ଼ିଲା ତୋହର ।
ଶ୍ରୀରାମ ସଙ୍ଗତେ ସେହି ବହୁତ ଯୁଝିଲା
ସୈନ୍ୟସହ କୁମରକୁ ଶ୍ରୀରାମ ମାଇଲା ।
ଶୁଣିଣ ବିଲଙ୍କା ରାଜା କାନ୍ଦେ ଉଚ୍ଚସ୍ୱରେ
ହା ହା ପୁତ୍ର ବୋଲି ଢଳି ପଡ଼ଇ ଭୂମିରେ ।
ତା ଦୁଇ ସହସ୍ର ନେତ୍ରୁ ଲୋତକ ବହଇ
ଦ୍ୱିସହସ୍ର ଭୁଜ ନେଇ ହୃଦରେ ମାରଇ ।
ଆରେ ଆରେ ପୁତ୍ର ମୋର କାହିଁ ଛାଡ଼ିଗଲୁ
ଆକୁଳ ସମୁଦ୍ରେ ଭେଳା ମୋର ବୁଡ଼ାଇଲୁ ।
ସାତଶ ପଞ୍ଚାଶ ବର୍ଷୀ ଥିଲେ ଯେ ମୋହର
ଏକା ପୁତ୍ର ତୋତେ ପାଇଥିଲିରେ କୁମର ।

ଲେ ଏହି ଆସ୍ଥାନେ ସୁନ୍ଦର ବସଇ
ତକ ବଦନେ ନିତି ଚୁମ୍ବନ ଦିଅଇ ।
ହୁ ପିତା ବୋଲିଣ ଡାକିବ ତେ ମୋତେ
ଇଁ ଆଉ ଖୋଜି ଅବା ପାଇବଇଁ ତୋତେ
ବଣ ଦେଶରୁ ଏହି ଶ୍ରୀରାମ ଅଇଲା
ର୍ଦ୍ଧର ପୁତ୍ରକୁ ମୋ ଯୁଦ୍ଧରେ ମାରିଲା ।
ବୁଝି କରିବ ଉଚେ ରୋଦନ କରଇ
ରେ ପୁତ୍ର ମୋତେ ଏକା କରିଗଲୁ କାହିଁ
ାମାନେ ଏଡ଼ାକରି ଯାଇଥିଲେ ମୋତେ
ରେ ପୁତ୍ର ତୁହି ଛାଡ଼ି ଗଲୁ ବା କେମନ୍ତେ ।
ବୁଝି କରିବ ପୁଣି କାନ୍ଦଇ ରାଜନ
ବାର ଲୋକେ ଉଚେ କରନ୍ତି ରୋଦନ ।
ଙ୍କା ନଗରେ ଘୋର ରୋଦନ ଶୁଭଇ
ଶିରା ଉଇତ୍ୟା ଉଚେ ରୋଦନ କରଇ ।
ର ନୟନରୁ ତାର ବହିପଡ଼େ ନୀର
ତଙ୍କ ନୟନରୁ ବହେ ଅଶ୍ରୁଧାର ।
ାକୁ ପ୍ରବୋଧ ଦିଅନ୍ତି ସେନାପତିଗଣ
ମ ମଣିଷ କି ଆଉ ଆସିବ ରାଜନ ।
ତି ବୋଇଲା ଆହେ ପାତ୍ର ମନ୍ତ୍ରୀ ଶୁଣ
ନଗ୍ର ଭିତରେ ଦଣ୍ଡେ ନ ରହଇ ପୁଣ ।
ବାଡ଼ତାଟି ଖଟି ସେବା କରୁଥିଲ
ବେର ମୋହର ମଡ଼ି ଆନ କରୁଥିଲ ।
ବତାଏ ଖଟୁଥିଲେ ପଦ୍ମରେ ମୋହର
ବ ମୋତେ ସେବା କାମ୍ପା ନକରେ କୁବେର
ବତାଏ ଶ୍ରୀରାମର ସାହାଯ୍ୟ ପାଇଲେ
ର ଦିବସ ହେଲା ମୋପୁରେ ନଇଲେ ।
ବତାମାନେତ ଆଉ ନ ସେବିଲେ ମୋତେ
ାମକୁ ବଧ ମୁହିଁ କରିବ କେମନ୍ତେ ।
ନ୍ୟବଳ ସବୁ ଯୁଦ୍ଧେ ପଡ଼ିଲେ ମୋହର
ମଲ ମନ୍ତ୍ରୀ ମଲ ପ୍ରଜଙ୍ଘା ଅସୁର ।
ଡ଼ିବଡ଼ ଗଡ଼ରେ ମୋ ଲଗିଲକ ଜୁଇ
ବୁଦ୍ଧି କରିବ ମୋର ବୁଦ୍ଧି ଦିଶୁନାହିଁ ।
ୀ ମହାଦେଈ ଦାସୀ ପରିବାଶ ମଲେ
ର ପ୍ରଜାମାନେ ବଡ଼ ଅବସ୍ଥା ଲଭିଲେ ।
ଲି ଦଶ୍ଚପ୍ତ ଏବେ ହୋଇଲା ମରଣ
ହସ୍ର ଶିର ମୋର କାଟିବ ଶ୍ରୀରାମ ।

ଶୁଣିଣ ପ୍ରତିଜ୍ଞା କଲେ ଗରୁଡ଼ ମାହନ୍ତ
କାହିଁପାଇଁ ଏତେ ଚିନ୍ତା କର ନୃପନାଥ ।
କାଲିର ଯୁଦ୍ଧରେ ମାରିଦେବୁ ରଘୁବୀର
ପୁତ୍ର କଷ୍ଟ କାଲି ପାଶୋରିବୁ ନୃପବର ।
ମୂଳଥିଲେ ଡାଳ ଶାଖା ଅନେକ ହୁଅଇ
ଏଥିପାଇଁ ଚିନ୍ତା ତୁ ନକର ନୃପସାଇଁ ।
କାଲିର ଯୁଦ୍ଧରେ ତୁମ୍ଭେ ଜାଣିବ ବୃତ୍ତାନ୍ତ
କେଡ଼େବଡ଼ ମାଲସେ ଛୀ ଅଟେ ରଘୁନାଥ ।
ବେନିକର ଯୋଡ଼ି ବୋଲେ ନିଶିରା ଅସୁର
ଆଜ୍ଞାଦେଲେ କାଲି ମାରିଦେବି ରଘୁବୀର ।
ଶୁଣିଣ ନୃପତି ବଡ଼ ହରଷ ହୋଇଲା
ନିଶିରା ଦଇତ୍ୟ ମୁଣ୍ଡେ ମୁକୁଟ ବାନ୍ଧିଲା ।
ଶ୍ରୀରାମକୁ ମାରି ଭାଇ ରଖ ତୁ କୀରତି
ଏଡ଼େ ବଡ଼ ନଗ୍ର ପୋଡ଼ିଦେଲା ରଘୁପତି ।
ନିଶିରା ବୋଇଲା ଦେବ ଏଥକୁ ନ ଡର
କାଲିର ଯୁଦ୍ଧରେ ଶତ୍ରୁ ମାରିବି ତୋହର ।
ଶୁଣିଣ ନୃପତି ସୁଖେ ପଲଙ୍କେ ଶୋଇଲା
ଚିନ୍ତାଭରେ ଘନ ଘନ ନିଃଶ୍ୱାସ ଛାଡ଼ିଲା ।



## ନିଶିରା ଦୈତ୍ୟ ଯୁଦ୍ଧକୁ ଗମନ ହନୁମାନଦ୍ୱାରା ମୃତ୍ୟୁ, ସହସ୍ର ରାବଣର ଯୁଦ୍ଧ, ରାମଚନ୍ଦ୍ରଙ୍କର ପରାଜୟ, ହନୁମାନ ଦ୍ୱାରା ରଜାର ମୂର୍ଚ୍ଛା ଓ ଫେରିଯିବା

ଈଶ୍ୱର ବୋଇଲେ ଦେବୀ ପାର୍ବତି ଗୋ ଶୁଣ
ଗତି ମୁକ୍ତି ଲଭି ପ୍ରିୟେ ଶୁଣି ରାମାୟଣ ।
ବାଲ୍ମୀକି ମୁନି ଯାହା କରିଛି ଭିଆଣ
ହେମବନ୍ତ ଦୁହିତା ଗୋ ଏକମନେ ଶୁଣ ।
ପାର୍ବତୀ ବୋଇଲେ ଶୁଣ ଆହେ ଶୂଳଧର
କେବଣ ବର୍ଗର ପୁଣ କଲକ ଅସୁର ।
ଈଶ୍ୱର ବୋଇଲେ ରାତ୍ର ପ୍ରଭାତ ହୋଇଲା
ବିଲଙ୍କା କଟକ ମଧ୍ୟେ ଚମକ ବାଜିଲା ।
ବାହାର ହୋଇଲା ବେଗେ ରାଜା ସହୋଦର
ଗରୁଡ଼ ମାହନ୍ତ କେତେ ବୀର ମହାବୀର ।
ସେନା ସେନାପତିମାନେ ବୀରବେଶ ହେଲେ
ହସ୍ତରେ ଆୟୁଧ ଧରି ବାହାର ହୋଇଲେ ।

ବାରଲକ୍ଷ ହସ୍ତୀ ସାତ ଅର୍ବୁଦ ପଦାତି
ବାହାର ହୋଇଲେ ତିନଜଣ ସେନାପତି ।
ସାତଲକ୍ଷ ମତ୍ତହସ୍ତୀ ହୋଇଲେ ବାହାର
ସଜହୋଇ ବାହାରିଲେ ଅକଳନ ବଳ ।
କେତେଲକ୍ଷ ପଦାତିକ କଳନା ନ ଯାଇ
ବାଦ୍ୟ ନାଦ ଶବଦରେ ପୃଥ୍ୱୀ ଉଚ୍ଛୁଳାଇ ।
ଶବଦ ଶୁଣଇ ଶ୍ରୀରାମଙ୍କୁ ମାର ଯାଇ
ହନୁକୁ ବୋଲନ୍ତି ପ୍ରଭୁ ରଘୁକୁଳ ସାଇଁ ।
ଯୁଦ୍ଧ କରିବାକୁ ଆଜ ଅଇଲା ଅସୁର
ସମ୍ଭାଳ ସମର ଆଜ କର ହନୁବୀର ।
ଏହାଶୁଣି ହନୁମନ୍ତ ସନମତ କଲା
ବାଳକାକୁ କେତେକଷ୍ଟ ପାଇଲ ବୋଇଲା ।
ମାରିବା ଦୈତ୍ୟକୁ ଆଜ ହେଳା ନ କରିବା
ଅଯୋଧ୍ୟା ପୁରକୁ କାଲି ସୁଖେ ଚଳିଯିବା ।
ଶୁଣିଣ ଶ୍ରୀରାମ ବଡ଼ ହରଷ ହୋଇଲେ
ସ୍ନାନ ନିତ୍ୟକର୍ମ ବେଗେ ଶ୍ରୀରାମ ସାରିଲେ ।
ସନ୍ଧ୍ୟା ତରପଣ ସାରି ଧରି ଧନୁଶର
ଉତ୍ତର ଦୁଆରେ ସୈନ୍ୟ ହୋଇଲେ ବାହାର
ଗର୍ଜନ୍ତି ଧାମନ୍ତି ଉଚ୍ଚେ କରନ୍ତି ଗର୍ଜନ
ପଦାଘାତେ ପୃଥ୍ୱୀ ଦେବୀ କମ୍ପେ ଘନ ଘନ ।
ପାତାଳେ ବାସୁକୀ ନାଗ କମ୍ପେ ଥରହର
ଘନ ଘନ କମ୍ପମାନ ହୁଏ ସ୍ୱର୍ଗପୁର ।
ଅସ୍ତ୍ର ଶସ୍ତ୍ର ବୁଲାଇଣ ଅସୁରେ ଧାମନ୍ତି
ଗର୍ଜନ ଘାତରେ ପୃଥ୍ୱୀ ହେଳେ ଘୋଟୁଛନ୍ତି ।
ଦିବ୍ୟରଥ ଚଳାଇଣ ନିଶିରା ଅସୁର
ହେଳା ଯୁଦ୍ଧ ନ କରଣ ବୀର ମହାବୀର ।
ଯେମନ୍ତେ ମରଇ ମାର ଆଜ ଶ୍ରୀରାମକୁ
କାଲି ଯୁଦ୍ଧେ ମାଇଲା ସେ ଅଖିଳ ପୁତ୍ରକୁ ।
ଶୁଣିଣ ଦଇତ୍ୟେ କ୍ରୋଧଭରେ ପରଜ୍ୱଳ
ଏକ ମୁଖେ ଶ୍ରୀରାମଙ୍କୁ ଦେଉଛନ୍ତି ଗାଳ ।
କାଲି ଯୁଦ୍ଧ ପରି ଆଜ ଯୁଦ୍ଧକୁ ନ ମଣ
ନିଶ୍ଚୟ ସମରେ ଆଜ ହୋଇବ ମରଣ ।
କହୁଁ କହୁଁ ନିଶାଚର ପାଶେ ପ୍ରବେଶିଲେ
ଶ୍ରୀରାମଙ୍କୁ ଶତେଘୁରି କରଣ ବେଢ଼ିଲେ ।
ହାଣନ୍ତି ନାରାଚ ମାରୁଛନ୍ତି ତିକ୍ଷକାତି
ଭୁଷଣ୍ଡି ମୁଦ୍‌ଗର ଧରି ପ୍ରହାର କରନ୍ତି ।

ଧନୁ ଧରି ରାଉତ ଯେ ହାଣୁଛନ୍ତି ଶର
ଶରଘାତେ ଦିବସ ଦିଶଇ ଅନ୍ଧକାର ।
ଦେଖିଣ କୋଦଣ୍ଡଧାରୀ ପ୍ରଭୁ ରଘୁବୀର
ଅସୁରଙ୍କ ଉପରକୁ ହାଣୁଛନ୍ତି ଶର ।
ଛିଡ଼ନ୍ତି ଅସୁରେ ଶରେ କୁଡ଼ କୁଡ଼ ହୋଇ
ରୁଧିରରେ କୋରକାତ ହେଉଅଛି ମହୀ ।
ଦେଖିଣ ନିଶିରା ବୀର ହେଲା ଆଗୁସାର
ଲୁହା ଧନୁ ତିନଗୋଟି ଧଇଲା ଅସୁର ।
ଶ୍ରୀରାମଙ୍କ ଉପରେ ସେ ବରଷିଲା ବାଣ
ଲକ୍ଷ ଲକ୍ଷ ବାଣ ମନ୍ତ୍ରୀ ହାଣଇ ରାଗେଣ ।
ଧନୁ ଧନୁ ବାଜ ଶବ୍ଦ କରେ କ୍ଷଣ କ୍ଷଣ
ଅନୁକ୍ଷଣେ ବାଣ ହାଣୁଛନ୍ତି ବେନିଜନ ।
ବାଣର ଉପରେ ବାଣ ବାଜି ହୁଏ ଚୂର୍ଣ୍ଣ
ଫଳା ଫଳ ଘଷି ହୋଇ ଉଠେ ହୁତାଶନ ।
ପ୍ରଜ୍ୱଳିତ ଅଗ୍ନିଶର ହାଣିଲା ଅସୁର
ବରୁଣାସ୍ତ୍ରେ ନିବାରିଲେ ତ ହା ରଘୁବୀର ।
ପର୍ବତାସ୍ତ୍ର ପ୍ରହାରିଲେ ଶ୍ରୀରଘୁନନ୍ଦନ
ଭାଙ୍ଗି ଦଇତ୍ୟର ରଥ ହୋଇଗଲା ଚୂର୍ଣ୍ଣ ।
ଭୂମିଗାମୀ ହୋଇଲା ସେ ନିଶିରା ଅସୁର
ଧାଇଁ ମାଡ଼ି ବସିଲାକ ହନୁମନ୍ତ ବୀର ।
ଦୈତ୍ୟ ବକ୍ଷସ୍ଥଳେ ହନୁ ବସିଲାକ ଯାଇ
ବଜ୍ର ସମ ବିଧା ଗୋଟା ମାଇଲା ନିଠାଇ ।
ବିଧାଘାତେ ଦୈତ୍ୟବର ହେଲା ଅଚେତନ
ଘଡ଼ିକେ ଚେତନା ପାଇ ଗର୍ଜେ ଘନ ଘନ ।
ଆକର୍ଷି ସେ ଦୈତ୍ୟବୀର ହନୁକୁ ଧରଇ
ପ୍ରଚଣ୍ଡ ପର୍ବତପରେ ନେଇ କଚାଡ଼ଇ ।
ହନୁମନ୍ତ ଦେହେ ବାଜି ଗିରି ହେଲା ଚୂର
ଘଡ଼ିକେ ଚେତନା ପାଇଲାକ ହନୁବୀର ।
ଧାଇଁ ଦଇତ୍ୟର ଷଡ଼ଭୁଜକୁ ଧରଇ
ସୈନ୍ୟଙ୍କ ଉପରେ ବୀର କଚାଡ଼ିଲା ନେଇ ।
ବାଜି ରଥ ଗଜ ଅଶ୍ୱ ହୋଇଗଲା ଚୂର୍ଣ୍ଣ
ଗୁଣ୍ଡା ହୋଇଗଲେ ପଡ଼ି ଅସୁରର ସୈନ୍ୟ ।
କୁଢ଼ କୁଢ଼ ହୋଇ ଅଶ୍ୱ ଗଜ ପଡ଼ି ମଲେ
ଛିନ୍ନ ଛିନ୍ନ ହୋଇ ଚହୁଁ ଦୈତ୍ୟ ପଳାଇଲେ ।
ରହ ରହ ବୋଲି ତାଙ୍କୁ ଡାକେ ହନୁବୀର
ଅସୁରକୁ ବୁଲାଇଣ କରୁଛି ପ୍ରହାର ।

ଯହୁଁ ପଳାଇଲେ ଦୈତ୍ୟ ସଂଗ୍ରାମ ଛାଡ଼ିଣ
ଦୈତ୍ୟଙ୍କୁ ମାଡ଼ ବସିଲା ବୀର ହନୁମାନ ।
ବଧାଘାତେ ଭାଙ୍ଗି ପକାଇଲା ତାର ମୁଣ୍ଡ
ଛନଗୋଟା ମୁଣ୍ଡକୁ ଯେ କଲା ଖଣ୍ଡ ଖଣ୍ଡ ।
ଦୁଇଫାଳ କରି ତାକୁ ଚିରି ପକାଇଲା
ଦୁଇଭୁଜ ଧରି ତାକୁ ବୁଲାଇ ଧଇଲା ।
ବଲଙ୍କା ନଗର ମଧ୍ୟେ ହନୁ ଗଲା ପଶି
ଏହାଦେଖି ଦୈତ୍ୟଗଣ ଓଗାଳିଲେ ଆସି ।
ଅସ୍ତ୍ରଧରି ବାରକୋଟି ଧାଇଁଲେ ଅସୁର
ହନୁମନ୍ତ ସଙ୍ଗତରେ କରନ୍ତି ସମର ।
ଘୋରଯୁଦ୍ଧ ଆରମ୍ଭିଲା ସେଠାରେ ମାରୁତି
ଶବଦ ଶୁଣିଣ ଧାଇଁଗଲେ ରଘୁପତି ।
ରଥରେ ବସିଣ ରାମ ପଶିଲେ ଭିତରେ
ରଥକୁ ଦେଖିଣ ବେଗେ ଧାଇଁଲେ ଅସୁରେ ।
ଆସ୍ଥାନ ନିକଟେ ନେଇ କଲେକ ଢମାନ
ଶ୍ରୀରାମଙ୍କୁ ବେଢ଼ିଗଲେ ଅଶୀକୋଟି ସୈନ୍ୟ
ରଘୁନାଥଙ୍କ ଉପରେ ବାଣ ବରଷିଲେ
ଶଲ୍ୟ କୁନ୍ତ ଶୂଳ ଗଦା ମୁଦ୍‌ଗର ମାଇଲେ ।
ରଜାର ଅଗ୍ରତେ ଯାଇ କହିଲେ ଡଗରେ
ଶ୍ରୀରାମ ପଶିଲେ ଦେବ କଟକ ଭିତରେ ।
ଶୁଣିଣ ଅସୁର ଅତି ଚମତ୍କାର ହୋଇ
ଦୁଇ ସହସ୍ର ଭୁଜରେ ଶକତି ଧରଇ ।
ଅନ୍ତଃପୁରୁ ବୀରମଣି ବାହାର ହୋଇଲା
ରେ ରେ ରାମ ବୋଲି ଉଚେ ଦଇତ୍ୟ ଡାକିଲା
କଟକେ ପଶିଲୁ କମ୍ପା ଆରେ ରଘୁବୀର
ଏ ସୁନ୍ଦର କଟକକୁ କଲୁ ଛାରଖାର ।
ପୂର୍ବ ସନ୍ଧିତରେ ମୋର ମାରି ସହୋଦର
ଏବେ ଆସି କଟକରେ ପଶିଲୁ ମୋହର ।
ସୈନ୍ୟବଳ ମୋର ସବୁ ମାଇଲୁ କମ୍ପାଇ
ମୁହିଁତ ତୋହର କିଛି ଦୋଷ କରନାହିଁ ।
ଏହାଶୁଣି ରଘୁନାଥ ଦିଅନ୍ତି ଉତ୍ତର
ଏ ତୋହର ଉପଦ୍ରବ ଅଟଇ ଅପାର ।
ନୀଚ ଜାତି ହୋଇ ଭୁଞ୍ଜ ବଡ଼ପଣ ପାଇ
ଦରିଦ୍ର ପାଇଲେ ଧନ ଯେସନେ ନ ଗଣଇ ।
ଦେବତାମାନଙ୍କୁ କମ୍ପା ବାନ୍ଧିଲୁ ପାଦରେ
ତୁ କମ୍ପା ପଶିଲୁ କହ ମୋର ସ୍ୱର୍ଗପୁରେ ।

ସୁଧର୍ମା ସଭାକୁ ମୋର ନାଶିଲୁ କମ୍ପାଇ
ତୋର କେଉଁ ଦୋଷ କହ କରିଥିଲା ମୁହିଁ ।
ଏ ତୋହର ଭାବ ଯହୁଁ ନ ସହିଲା ପୃଥ୍ୱୀ
ମୋ ଆଗେ ଗୁହାରି କଲାଯାଇ ବସୁମତୀ ।
ତେଣୁ ମଞ୍ଚପୁରେ ଜନ୍ମ ହେଲି ଦେହ ବହି
ଆରେରେ ଦଇତ୍ୟ ତୋତେ ମାରିବଇ ମୁହିଁ ।
ତାହାଶୁଣି ଦଇତ୍ୟ ଯେ କୋପେଣ ଧାଇଁଲା
ଶତକୋଟି ବାଣ ଏକା ବେଳକେ ବିନ୍ଧିଲା ।
ଶ୍ରୀରାମ ରଥରେ ବାଣ ଯାଇଣ ପଡ଼ଇ
ଅନ୍ଧାର ଦିଶିଲା ବାଣେ ସେ ବଲଙ୍କା ଭୂଇଁ ।
ପୁଣିହିଁ ଅସୁର ତୀକ୍ଷ୍ଣ ନାରାଚ ବିନ୍ଧିଲା
ଏକା ଥରକେ ଶତ ମୁଦ୍‌ଗର ମାଇଲା ।
ଏଗାର ଅଯୁତ ବାଣ ବାନ୍ଧିଲା ଅସୁର
ଆଠପଦ୍ମ ବାଣ ପୁଣି କଲାକ ପ୍ରହାର ।
ତହିଁପରେ ବିନ୍ଧିଲାକ ସାତକୋଟି ବାଣ
ରଥ ବାହି ନପାରିଲା ବୀର ଚନ୍ଦସେନ ।
ରଥଘେନି ରାମଚନ୍ଦ୍ର ପଡ଼ିଲେ ଭୂମିରେ
ରଥକୁ ଧଇଲେ ଯାଇ ବାରକୋଟି ବୀରେ ।
ସେ ଦେବଯାନକୁ ତଳେ ନ ପାରିଲେ ସ୍ଥଳ
ହନୁକୁ ସୁମରଣ କଲେ ପ୍ରଭୁ କୃପାଧାରୀ ।
ଜାଣିପାରି ଧାଇଁଲା ସେ ପବନର ବଳା
ଅସୁର ଥାଟରେ ହନୁମନ୍ତ ପ୍ରବେଶିଲା ।
ଦେଖିଣ ଦଇତ୍ୟମାନେ ବଡ଼ ଭୟକଲେ
ବାସଭଗ୍ନ ପକ୍ଷୀ ପ୍ରାୟେ ତହୁଁ ପଳାଇଲେ ।
ଚନ୍ଦସେନ ରଥ ତୋଳି ବାହିଲା ଶୂନ୍ୟରେ
ଅନୁକ୍ଷଣ ତୀକ୍ଷ୍ଣବାଣ ବିନ୍ଧନ୍ତି ଅସୁରେ ।
ଲକ୍ଷ ଲକ୍ଷ କୋଟି କୋଟି ବରଷନ୍ତି ଶର
ସମ୍ଭାଳି ନ ପାରି ତହୁଁ ସେ କୋଦଣ୍ଡଧର ।
ପ୍ରଚଣ୍ଡ ଗିରିକେ ପଳାଇଲେ ରଘୁପତି
ପଛେ ପଛେ ଗୋଡ଼ାଇଲେ ବଲଙ୍କା ନୃପତି ।
ଅନୁକ୍ଷଣେ ତୀକ୍ଷ୍ଣଶର ଅସୁର ପ୍ରହାରେ
ହନୁମନ୍ତ ରହି ନ ପାରିଲା ଅଗ୍ରତରେ ।
ପ୍ରଚଣ୍ଡ ଗିରିକି ହନୁ ପଳାଇଣ ଗଲା
ମୁଥାଘାତେ ରାଜା ସେହି ଗିରି ଉପାଡ଼ିଲା ।
ଧରିଣ ସେ ପର୍ବତକୁ ଦଇତ୍ୟ ବୁଲାଇ
ରଘୁନାଥ ରଥପରେ କଚାଡ଼ିଲା ନେଇ ।

ଦେଖି ପ୍ରଭୁ ରଘୁନାଥ ବିମାନ ତୋଳିଲେ
ଗଗନ ମାର୍ଗରେ ରାମଚନ୍ଦ୍ର ପଳାଇଲେ ।
ରାମଙ୍କ ବିପତ୍ତି ଦେଖି କ୍ରୋଧେ ଦେବଗଣେ
ଅସ୍ତ୍ର ଶସ୍ତ୍ର ହସ୍ତେ ଧରି ଧାଇଁଲେ ଗଗନେ ।୫୦
ବଜ୍ରଦଣ୍ଡ ପ୍ରହାରିଲେ ଶିରେ ସୁନାସୀର
ପୁନରପି ବଜ୍ରଶର ମାରେ ପୁରନ୍ଦର ।
ଅଙ୍ଗେ ବାଜି ବଜ୍ରଶକ୍ତି ହୋଇଗଲା ଧୂଳି
ଆଁ ଆଁ କରି ଗଗନରେ ଥାଏ ମହାବଳୀ ।୫୨
ଦେଖି ଦେବଗଣେ ସର୍ବେ ଭୟେ ପଳାଇଲେ
ଶ୍ରୀରାମଙ୍କ ପାଦତଳେ ଶରଣ ପଶିଲେ ।
ଅସୁରର ଉପଦ୍ରବ ଦେଖି ହନୁବୀର
ବଜ୍ରଚଟା ମାରିଲା ସେ ଅଞ୍ଜନା କୁମର ।୫୪
ଚଟାଘାତେ ଦୈତ୍ୟବୀର ଭୂମିରେ ପଡ଼ିଲା
ସହସ୍ର ମୁଣ୍ଡରୁ ତାର ରୁଧିରୁ ବହିଲା । ୫୬
ତେଜି ଉଠି ବିଲଙ୍କାକୁ ରାଜନ ପଳାଇ
ଅନ୍ତଃପୁର ଭିତରେ ପଶିଲା ରାଜା ଯାଇଁ ।
ସୈନ୍ୟବଳ ଯେତେକ ଉତ୍ତର ଦ୍ୱାରେ ଥିଲେ
ରାଜା ପଳାଇବା ଦେଖି ସର୍ବେ ପଳାଇଲେ ।

**ବିଲଙ୍କା ରାବଣର ଗ୍ରାମଦେବତୀ ପୂଜା ଓ ସେଠାରେ ନିଷ୍ଫଳ ହୋଇ ହୋମ କରିବା, ଏହି ସମୟରେ ରାମ ଓ ହନୁମାନଙ୍କର ବିଲଙ୍କାରେ ପ୍ରବେଶ ସହସ୍ରଶିରା ରାବଣ ସହ ଯୁଦ୍ଧ ଏବଂ ସମସ୍ତ ସୈନ୍ୟଙ୍କର ପତନ**

ଈଶ୍ୱର ବୋଇଲେ ଦେବୀ ପାର୍ବତୀ ଗୋ ଶୁଣ
ପ୍ରଚଣ୍ଡ ପର୍ବତେ ଯାଇଁ ମିଳିଲେ ଶ୍ରୀରାମ ।
ହନୁକୁ ବୃହିଁଣ ରାମ ବହୁ ପ୍ରଶଂସିଲେ
ଧନ୍ୟ ଧନ୍ୟ ହନୁମନ୍ତ ବୋଲିଣ ବୋଇଲେ ।୨
ଦେବତାଏ ପୁଷ୍ପବୃଷ୍ଟି କଲେ ହନୁଶିରେ
ସମାଚାର ଶୁଣି ଜନେ ଏଥୁ ଅନନ୍ତରେ ।
ଭୟରେ ପଳାଇ ରାଜା କଟକେ ପଶିଲା
ଲାଜ ପାଇ ମୁଖ ମାଡ଼ି ପଲଙ୍କେ ଶୋଇଲା ।୪
କି କରିବି ବୋଲିଣ ସେ ହୋଇଲା ଚିନ୍ତିତ
ଶ୍ରୀରାମ ନିଶ୍ଚୟ ମୋର ଶିର କାଟିବେତ ।
ନର ଆଉ ବାନରଙ୍କୁ ନ ପାରିଲି ଜିଣି
କି ଉପାୟ କରିବଇଁ ଭାବେ ନୃପମଣି ।୬
ରାଜ ଅର୍ଘ ଥାଉ ଘେନି ପୂଜା ଦ୍ରବ୍ୟମାନ
ଗ୍ରାମଦେବତୀଙ୍କ ପାଶେ ମିଳିଲା ରାବଣ ।
ବହୁତ ସ୍ତୁତି ଗାନ କରି ଦେଇଣ ବୋଲଇ
ଶ୍ରୀରାମ ଆସିଣ ମୋର ନଗ୍ର ଉଜାଡ଼ଇ ।୮
ତୋହର ସଞ୍ଚିଲା ରାଜ୍ୟ ଭାଙ୍ଗଇ ବାନର
ବିଲଙ୍କା ପୁରକୁ ଏବେ ମାଏ ଗୋ ସମ୍ଭାଳ ।
ବହୁତ ବିନୟ କରି କହିଲା ରାଜନ
ଗ୍ରାମେଶ୍ୱରୀ ଚଣ୍ଡୀଦେବୀ ହୋଇଲେ ପ୍ରସନ୍ନ ।10
ବୋଇଲେ ସେ ଶୁଣ ତୁହି ବିଲଙ୍କା ରାଜନ
ସ୍ୱୟଂ ପରଂବ୍ରହ୍ମ ଯେ ସେ ଅଟନ୍ତି ଶ୍ରୀରାମ ।
ତାଙ୍କୁ କେହି ଜିଣିବାକୁ ନାହିଁ ତିନିପୁରେ
ଲଙ୍କା ରାବଣକୁ ବଧ କଲେ ସର୍ବଂଶରେ ।12
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ବୀରଙ୍କୁ ମାରିଲେ
ସମରେ ଜିଣନ୍ତା କେହି ନାହିଁ ତାଙ୍କ ତୁଲେ ।
ନିଶ୍ଚୟ ସମରେ ରାମ ମାରିବେତ ତୋତେ
ଅକାରଣେ ତୁ କମ୍ପାଇଁ ସେବାକରୁ ମୋତେ ।14
ଶ୍ରୀରାମଙ୍କୁ ମୋର କିଛି ଉପାୟତ ନାହିଁ
ଶରଣ ପଶ ତୁ ଶ୍ରୀରାମଙ୍କ ପାଦେ ଯାଇଁ ।
ତୋଠାରେ କରିବେ ଦୟା ଯେବେ ରଘୁପତି
ପୂର୍ବହୁଁ ଦ୍ୱିଗୁଣ ତୋର ହୋଇବ ସମ୍ପତ୍ତି ।16
ନୃପତି ବୋଇଲେ ମୁହିଁ ପଶିବି ଶରଣ
ବଂଶ ମୋର ମରିଗଲା ହରାଇଲି ସୈନ୍ୟ ।
ବହୁତ ପଦାତି ରଥୀ ହାତୀ ଘୋଡ଼ା ଥିଲେ
ବୀର ମହାବୀର ସବୁ ରାମ ହସ୍ତେ ମଲେ ।18
କେବଳ ଜୀବନ ସିନା ଅଛଇ ମୋହର
ଶତଶିରା ପୁତ୍ର ମଲା ନିଶିର ସୋଦର ।
ମଲେ ରାଣୀ ମହାଦେଈ ଦାସୀ ପରିବାର
ସମସ୍ତଙ୍କୁ ମାରିଲଣି ଏକା ରଘୁବୀର । 20
ଏକା ହୋଇ କମ୍ପା ଯାଇ ପଶିବି ଶରଣ
କି ବୋଲି ବୋଲିବେ ମୋତେ ନରପତି ଗଣ
ମୋ ପାଦେ ଦେବତାମାନେ ଖଟିବେ କମ୍ପାଇଁ
କେମନ୍ତେ କରିବି ଏହା କହ ମହାମାୟୀ ।22
ରାବଣ କଥା ଶୁଣିଣ ସେ ଗ୍ରାମ ଦେବତୀ
ବୋଇଲେ ମୋ ବୋଲକର ଆରେ ଲଙ୍କପତି
ତୁ ଯେବେ ସଙ୍କୋଚ ମନେ କରୁ ନୃପସାଇଁ
ଶ୍ରୀରାମଙ୍କ ନିକଟକୁ ଯିବି ତୋହପାଇଁ ।25

ଫେରଯିବେ ଅଯୋଧ୍ୟାକୁ ପ୍ରଭୁ ରଘୁବୀର
ଦେବତାଙ୍କୁ ବଶକର ରାଜ୍ୟ ଭୋଗକର ।
ନୃପତି ବୋଇଲେ ମୁଁ ଶରଣ ନ ପଶଇ
ହେଉପଛେ ଶ୍ରୀରାମର ହସ୍ତେ ମରିବଇଁ ।
ମାରିବା ଉପାୟ ଥିଲେ କହ ମାତା ମୋତେ
ଏ ଆତଙ୍କ କାଳେ ମାତା ପଶୁରୁଛୁ ତୋତେ
ଦେବୀ ଯେ ବୋଇଲେ କିଛି ଉପାୟତ ନାହିଁ
ଶରଣ ପଶିଲେ ବର୍ତ୍ତିପାରୁ ଲଙ୍କସାଇଁ ।
ଶୁଣିକରି ନୃପମଣି ବାହୁଡ଼ି ଅଇଲା
ଚନ୍ଦ୍ରାଭରେ ପୁଣି ଅଗ୍ନିକୁଣ୍ଡ ସଜାଡ଼ିଲା ।
ସ୍ବରବେଦ ପଢ଼ି ତହୁଁ ଆହୁତି ଦିଅଇ
ଶ୍ରୀରାମକୁ ମାରିବାକୁ ବର ଯେ ମାଗଇ
ବୈଶ୍ବାନର ଦେବତାଙ୍କୁ କରୁ ଆରାଧନ
ରାତ୍ରଗୋଟି ପ୍ରଭାତ ଯେ ହୋଇଲା ସେଦିନ
କୁକ୍‌କୁଟ ପକ୍ଷୀଏ ରାବ ଦେଲେ ଘନ ଘନ
ନିଦ୍ରା ତେଜି ଉଠିଲେକ କୌଶଲ୍ୟା ନନ୍ଦନ
ମୁଖ ପଖାଳିଣ ସାରି ନିତ୍ୟ କର୍ମମାନ
ସମୁଦ୍ରରେ ସ୍ନାନକଲେ କୋଦଣ୍ଡ ଧାରଣ ।
ସନ୍ଧ୍ୟାସାରି ମାରୁତିଙ୍କୁ ପାଶକୁ ଡାକିଲେ
ଅହିଲଙ୍କାକୁ ଯାଅ ବାବୁ ବୋଲିଣ ବୋଇଲେ ।
ଅଛନ୍ତି ଅହିଲଙ୍କା ପୁରେ ଆଉ କେତେ ସୈନ୍ୟ
କଳିଆସ ଅସୁରର ବଳ ପରାକ୍ରମ ।
ତୋର ପଛେ ପଛେ ବାବୁ ଯାଉଅଛି ମୁହିଁ
ଅସୁରଙ୍କ ସଙ୍ଗେ ଯୁଦ୍ଧ ଆଗେଯାଇ ଭୁହି ।
ଶ୍ରୀରାମଙ୍କ ଆଜ୍ଞାପାଇ ହନୁମନ୍ତ ବୀର
ଅହିଲଙ୍କାପୁରକୁ ବେଗେ ହୋଇଲା ବାହାର ।
ଗଡ଼ର ଉତ୍ତର ଦ୍ବାର ବାଟରେ ପଶିଲା
ଅସୁର ଯେତେକ ଥିଲେ ତାହାଙ୍କୁ ମାରିଲା
ପବନ କୁମର ଯହୁଁ ପଶିଲା ଭିତରେ
ହାଲହୋଳ ପଡ଼ିଲାକ ଅହିଲଙ୍କା ନଗରେ ।
ଦେଖିକରି ପୁରଜନ ହେଲେ ଛନ୍ଦ ଛନ୍ଦ
କେ ବୋଇଲା ଅଇଲାହେ ବୀର ହନୁମାନ
କେ ବୋଲଇ ଚାଲ ଏଥୁ ଯିବାକ ପଳାଇ
କେବଣ ଅସୁର କୁଟୁମ୍ବକୁ ସମ୍ଭାଳଇ ।
ଜଣାଇଲେ ନୃପତିର ଆଗରେ ଅସୁରେ
ଏହନୁମନ୍ତ ପ୍ରବେଶିଲା ଆସି ନିକଟରେ ।

ଶୁଣିଣ ନୃପତି ବେଗେ ସୈନ୍ୟଙ୍କୁ ଡାକିଲା
ବେଢ଼ି ମାର ହନୁକୁ ଯେ ବୋଲିଣ ବୋଇଲା
ଦଇତ ଧାଇଁଲେ ରାଗେ ହୋଇ ପରଜଳ
ଆରେ ରେ ବାନର ବୋଲି ଦନ୍ତ କହୁ ଗାଳ
ଭୁତ ଆସିଅଛୁ ରାମ ଅଛି ତୋର କାହିଁ
ଆଜ ଯମ ନୃପତିକୁ ଦେଖିବୁରେ ଯାଇଁ ।
ମରିବାକୁ ଆସିଅଛ ତୁମ୍ଭେ ଦୁଇଜଣ
ପୋଛିଅଛି ତୁମ୍ଭ ପାଞ୍ଜି ଆଜ ଜନ୍ମରାଶି ।
ଏତେବୋଲି ଦୈତ୍ୟ ବେନିପାରୁଶେ ବେଢ଼ିଲେ
ଛେଲ କୁନ୍ତ ଚକ୍ର ଆଦି ବାଣ ପ୍ରହାରିଲେ ।
ମାରନ୍ତି ଶାବେଳ ପୁଣି ଗୁରୁଜ ମୁଦ୍‌ଗର
ହାତେ ଧନୁ ଧରିଣ ସେ ବନ୍ଧୁଛନ୍ତି ଶର ।
ଦେଖିକରି ହନୁମନ୍ତ ଗର୍ଜିଣ ଉଠିଲା
ପ୍ରଳୟର ଘଡ଼ଘଡ଼ି ପରାୟେ ଶୁଭିଲା ।
ଅସୁରଙ୍କ ଉପରକୁ ପଡ଼ିଲାକ ଧାଇଁ
ଲଞ୍ଜରାଂଶ ଅସୁରକୁ ଦରାଣ୍ଡି ଧରଇ ।
କଚୁଡ଼ଇ ତଳେ ନେଇ ଅଞ୍ଜନାର ବାଳ
କାହାର ଗୋଡ଼କୁ ଧରି କରେ ବେନିଫାଳ ।
ବଳେ ଧରି ଉପାଡ଼ଇ କାର ଭୁଜଦଣ୍ଡ
କ୍ରୋଧେ ବୀର ହନୁମନ୍ତ ମୋଡ଼େ କାର ମୁଣ୍ଡ ।
କାହାର ଗୋଡ଼କୁ ଧରି ଆଣ୍ଠରେ ମୋଡ଼ଇ
ଏକକ ଆରେକ ପରେ ନେଇ କଚୁଡ଼ଇ ।
ଘଡ଼ିଏ ସମର କଲା ପବନ କୁମର
ପଡ଼ିଲେ ଅହିଲଙ୍କାପୁରେ ବହୁତ ଅସୁର ।
ରଣରେ ଶୋଇଲେ ଦୈତ୍ୟ ପର୍ବତ ଆକାରେ
ଜରଜର ହେଲା ତନୁ ଦୈତ୍ୟଙ୍କ ରୁଧିରେ ।
କଟକ ଭିତରେ ପଶି ହନୁ ବେଗେ ଯାଇ
ସ୍ତ୍ରିଶୀ ବାଳକଙ୍କୁ ସବୁ ଖୋଜିଣ ମାରଇ ।
ବୃଦ୍ଧ ଯୁବା ଅସୁରକୁ ଯହିଁ ସେ ଦେଖଇ
ଲାଙ୍ଗୁଡ଼େ ବାନ୍ଧିଣ ହନୁମନ୍ତ ଯେ ପିଟଇ ।
ମୁଖରାବ ଗୋଳଶବ୍ଦ ଶୁଭିଲାକ ଯହୁଁ
ପ୍ରଚଣ୍ଡ ପର୍ବତ ପରେ ଶୁଣି ରାମବ୍ରହ୍ମ ।
ଚନ୍ଦ୍ରସେନକୁ ବୋଇଲେ ଶୁଭିଲାଣି ଗୋଳ
ହନୁମନ୍ତ ବୀର ଯାଇ କଲାଣି ସମର ।
ଏବେ ରଥ ସଜକର ଆହେ ଚନ୍ଦ୍ରସେନ
ବେଗ ହୋଇ ଚାଲଯିବା ଅହିଲଙ୍କା ଭୁବନ ।

ଆଜ୍ଞା ପାଇ ଚନ୍ଦ୍ରସେନ ସାଜ ରଥବର
ଶ୍ରୀରାମଙ୍କ ପାଦପଦ୍ମେ ରଖିଲେ ସତ୍ୱର ।
ରଥର ଉପରେ ବଜେ କଲେ ରଘୁନାଥ
ଚନ୍ଦ୍ରସେନ ଗଗନରେ ଚଳାଇଲା ରଥ ।
ପଶିଲେ ବଲଙ୍କାପୁରେ ପ୍ରଭୁ ରଘୁପତି
ଦେଖିଲେ ବହୁତ ସୈନ୍ୟ ମାରିଛି ମାରୁତି ।
ଏ ସମୟେ ରାଜା ଆଗେ କହିଲେ ଡଗର
ରଥ ଘେନି ରାମ ପଶେ କଟକ ଭିତର ।
ଶୁଣିଣ ନୃପତି ତହୁଁ କୋପଭର ହୋଇ
ଦୁଇ ସହସ୍ର ଭୁଜରେ ଶସ୍ତ୍ର ଧରେ ଯାଇ ।
ଶ୍ରୀରାମଙ୍କ ଅଗ୍ରତରେ ଦଇତ ମିଳିଲା
ରେ ରେ କାର ଶବଦରେ ରାମକୁ ଡାକିଲା ।
ଆଜ ଯୁଦ୍ଧେ ଦେଖିବୁ ତୁ ହଷ୍ଟେ ଯମପୁର
ଭେଟ କରାଇବି ଶତଶିରା ସଙ୍ଗତର ।
ଶୁଣିଣ ସେ ରଘୁନାଥ ବୋଲନ୍ତି ବଚନ
ଆବର ତୁ ଯମକୁରେ କରିବୁ ଦର୍ଶନ ।
ଏହା ଶୁଣି ନରପତି ମହାକୋପ କଲା
ସହସ୍ରେ ମୁଦ୍‌ଗର ଧରି ରାମକୁ ପିଟିଲା ।
ସେ ମୁଦ୍‌ଗର ରଥଚକେ ବାଜି ହେଲା ଚୂର
କ୍ରୋଧଭରେ ଧନୁଶର ଧଇଲା ଅସୁର ।
ଶ୍ରୀରାମଙ୍କ ଉପରକୁ ବିନ୍ଧିଲାକ ବାଣ ।
ବାଣଘାତେ ଅଦୃଶ୍ୟ ଯେ ହୋଇଲେ ଗଗନ ।
ଅନ୍ଧାର ଦିଶିଲା ବାଣେ ବଲଙ୍କା ନଗର
ହେବନ ଲାଗିଲା ଘୋରଯୁଦ୍ଧ ଦୁହିଁଙ୍କର ।
କଭୁରି ବାଣେକ ରାମ ବିନ୍ଧିଲେକ ଟାଣି
ଅସୁର ହାତରୁ ଧନୁ ପକାଇଲେ ହାଣି ।
ନିରସ୍ତ୍ର ହୋଇଣ ତହୁଁ ଅସୁର ଧାଇଁଲା
ଶ୍ରୀରାମଙ୍କ ରଥକୁ ସେ ଆକର୍ଷି ଧଇଲା
ବିନ୍ଧିଲେ ବହୁତ ବାଣ ପ୍ରଭୁ ରଘୁବୀର
ମୁଦ୍‌ଗର କଭୁରି ସୂଚିମୁନା ବଜ୍ରଶର ।
ଶକଟ ଯେ କଙ୍କପତ୍ର ତୀକ୍ଷ୍ଣମୁନା ବାଣ
ମହାକୋପେ ବିନ୍ଧୁଛନ୍ତି ପ୍ରଭୁ ରଘୁରାଣ ।
ଦେହେ ପଡ଼ି ଶର ସବୁ ହୋଇଗଲା ଚୂର
ବିନ୍ଧିଲେ ସପତଲକ୍ଷ ବାଣ ରଘୁବୀର ।
ଅସୁର ଅଙ୍ଗରେ ପଡ଼ି ସବୁ ଚୂର୍ଣ୍ଣ ହେଲା
ଏହାଦେଖି ଚମତ୍କାର ହେଲେ ରଘୁବଳା ।

ଧାଇଁଯାଇ ହନୁ ଧଇଲାକ ଅସୁରକୁ
ଆକର୍ଷି ଝିଙ୍କିଲା ପୁଣି ସହସ୍ରେ ଶିରକୁ ।
ସହସ୍ରେ ମୁକୁଟ ତାର ପକାଇଲା ଭାଙ୍ଗି
କୋପରେ ଅସୁର ତାକୁ ଧରେ ଗଲଗାଜ ।
ହନୁକୁ ବସିଲା ମାଡ଼ି ପ୍ରତାପୀ ଅସୁର
କେନସସ୍ତ୍ର ବିଧା ମାରେ ହନୁର ଉପର ।
ବୀରବର ହନୁମନ୍ତ ଖାଇ ବିଧାଘାତ
ଘାଏ ଘୁମାଇଲା କ୍ଷଣେ ଅଞ୍ଜନାର ସୁତ ।
ମୁଖବାଟେ ତାହାର ଯେ ବାହାରେ ରୁଧିର
ରାମ ରାମ ବୋଲି ଡାକେ ଅଞ୍ଜନା କୁମର ।
ଶୁଣି ବେଗେ ରଘୁନାଥ ଧନୁକୁ ଧଇଲେ
କେନଲକ୍ଷ ଶର ରାମ କୋପେଣ ବିନ୍ଧିଲେ ।
ଅସୁର ଉପରେ ଶର ପଡ଼ିଲାକ ଯାଇ
ତିଳେ ନ ଭେଦିଲା ହସେ ଟହଟହ ହୋଇ ।
ଦେଖିଣ ଶ୍ରୀ ରଘୁନାଥ କୋପେ ଗୁରୁତର
ବିନ୍ଧିଲେ ପଞ୍ଚତାଶର ପୁଣି ଚନ୍ଦ୍ରଧର ।
ପଡ଼ିଣ ପଞ୍ଚତାଶର ଅସୁର ଉପରେ
ଦେହେ ବାଜି ଧୂଳି ହୋଇ ଉଡ଼େ ଗଗନରେ
ଦେଖି ହନୁମନ୍ତ ବୀର ଧରେ ଅସୁରକୁ
ଅସୁର ସହସ୍ର ହାତେ ଧଇଲା ହନୁକୁ ।
ଧରାଧରି ହୋଇ ଦୁହେଁ କରନ୍ତି ସମର
ଦେଖୁଥାନ୍ତି ଆକାଶରେ ଥାଇ ସର୍ବସୁର ।
ଦୁହିଁଙ୍କର ପଦାଘାତେ ମେଦିନୀ କମ୍ପିଲା
ଅସମାନ ଭୂମିସବୁ ସମତୁଲ ହେଲା ।
ଗଡ଼ାଗଡ଼ି ହୋଇ ଦୁହେଁ କଲେ ଘୋର ରଣ
ବଲଙ୍କା ନଗର ପାଦ ଲାଗି ହେଲା ଚୂର୍ଣ୍ଣ ।
ଉବୁରି ଯେତେକ ସ୍ତ୍ରୀ ପୁରୁଷ ତ ଥିଲେ
ଦୁହିଁଙ୍କର ପାଦଲାଗି ଚୂର୍ଣ୍ଣ ହୋଇଗଲେ ।
ରଥ ଥୁଆଇଣ ଏଣେ କୋଦଣ୍ଡ ଧାରଣ
ବିନ୍ଧିଲେ କଭୁରି ବାଣ କ୍ରୋଧେ ରାମରାଣ ।
ନୃପତି ସଙ୍ଗରେ ଥିଲେ ଯେତେକ ସଇନ୍ୟ
ବାଣାଘାତେ ଚଳିଗଲେ ପୁର ସଞ୍ଜୀବନୀ ।
ଦେଖନ୍ତି ଶ୍ରୀରାମ ଯହିଁ ଅସୁରୀ ଅସୁର
ଗୋଡ଼ାଇ କାଟନ୍ତି ମୁଣ୍ଡ ମାରି ତୀକ୍ଷ୍ଣ ଶର ।
ଗୋଟିଏକ ନ ରଖିଲେ ବଲଙ୍କା ଭୁବନେ
ସବୁ ନାଶଗଲେ କେହି ନ ରହିଲେ ଜଣେ ।

ଏକମାତ୍ର ବଞ୍ଚିଅଛି ପ୍ରତାପୀ ଅସୁର
ହନୁମନ୍ତ ସଙ୍ଗତରେ କରଇ ସମର ।
ନିଜ କାୟା ବଢ଼ାଇଣ ପବନର ବତ୍ସ
ଦଇତ ସଙ୍ଗରେ ଯୁଝେ ହୋଇ ସମକକ୍ଷ । 148
ଦେବତାମାନଙ୍କୁ ଏହା ଗୋଚର ନୋହିଲା
ପାତାଳେ ବାସୁକି ରାଜା ଭୟରେ କମ୍ପିଲା ।
ହନୁକୁ ଧରଣୀ ତଳେ ପକାଇ ରାବଣ
କ୍ରୋଧେ ଦୁଇସହସ୍ର ବାଧା ମାଇଲା ରାଜନ । 150
ବାଧାଘାତେ ମୋହଗଲା ଅଞ୍ଜନା କୁମର
ମୁଖରୁ ରୁଧିର ଧାର ହୋଇଲା ବାହାର ।
ଶ୍ରୀରାମଙ୍କ ଉପରକୁ ଦଇତ୍ୟ ଧାଇଁଲା
କ୍ରୋଧେ ଦୁଇସହସ୍ର ଭୁଜେ ବିମାନ ଧଇଲା । 152
ଗଗନ ମାର୍ଗରେ ଚଳେ ଘେଞ୍ଜଣ ବିମାନ
ଦେଖି କ୍ରୋଧେ ଶରବୃଷ୍ଟି କରନ୍ତି ଶ୍ରୀରାମ ।
ବାଣ ବରଷନ୍ତି ରାମ ଜଳଧାରା ଜାଣି
ଶରର ଉପରେ ଶର ବିନ୍ଧୁଛନ୍ତି ଟାଣି । 154
ଦଇତ୍ୟର ଅଙ୍ଗେ ବାଣ ଉପୁଡ଼ି ପଡ଼ଇ
ତିଳଗ୍ରୁପା ପରମାଣେ ଦେହେ ନ ଭେଦଇ ।
ବଜ୍ରଶକ୍ତି ମାଇଲେକ ପୁଣି ରଘୁବୀର
ଅସୁର ହୃଦରେ ପଡ଼ି ହୋଇଗଲା ଚୁର । 156
ପୁଣି ବ୍ରହ୍ମ ଶକତି ଯେ ଜ୍ୱାଳାବଳୀ ବାଣ
ପାଶୁପତ ମାଳବାଣ ଆଦି ଭୁଜ ବାଣ ।
ଦଇତ୍ୟର ଅଙ୍ଗେ ପଡ଼ି ସବୁ ଗଲା ଭାଜି
ମହାକୋପେ ଦଇତ୍ୟ ଯେ ଉଠେ ଗଳଗାଜି । 158
ପୁଣି ସାତଲକ୍ଷ ବାଣ ବିନ୍ଧିଲେ ଶ୍ରୀରାମ
ହାତେ ଧରି ଭାଙ୍ଗିଦେଲା କ୍ରୋଧରେ ରାବଣ ।
ଦେଖିଣ ବିସ୍ମୟ ହେଲେ କୋଦଣ୍ଡ ଧାରଣ
ବୋଇଲେ ଅସୁର ଧନ୍ୟ ଧନ୍ୟ ତୋ ଜୀବନ । 160
ତିନିପୁର ଦହିପାରେ ଏ ମୋହର ବାଣ
ଯେଣୁ ତୋ ଅଙ୍ଗରେ ପଡ଼ି ସବୁ ହେଲା ଚୂର୍ଣ୍ଣ ।
କେମନ୍ତେ ମାରିବି ମୁହିଁ ପ୍ରତାପୀ ଅସୁର
ଏତେବୋଲି ମାଇଲେକ ତେନଲକ୍ଷ ଶର । 162
ପୁଣି ରାମ ଏକ ଦଶ କୋଟି ବାଣ ବିନ୍ଧି
ଦଶପଦ୍ମ ବାଣ ପୁଣି ଏକାବେଳେ ସନ୍ଧି ।
ପଡ଼ିଲା ଦଇତ୍ୟ ଅଙ୍ଗେ ସବୁ ଶର ଯାଇଁ
ସୂଚିମୁନେ କାନ୍ଥେ ଅବା ପର୍ବତ ଟଳଇ । 164

ଦେଖିଣ ବିସ୍ମୟ ହେଲେ ଶ୍ରୀରଘୁନନ୍ଦନ
ଚନ୍ଦସେନକୁ ବୋଇଲେ ସମ୍ଭାଳ ବିମାନ ।
ମହାକୋପ କରି ବେଗେ ଅସୁର ଧାଇଁଲା
ପର୍ବତ ଉପାଡ଼ି ଆଣି କରରେ ଧଇଲା । 166
ରାମଙ୍କ ଉପରେ ଦୈତ୍ୟ ପ୍ରହାରିଲା ନେଇ
ଉଡ଼ିଲେ ଗଗନମାର୍ଗେ ପ୍ରଭୁ ରଘୁସାଇଁ ।
କ୍ରୋଧଭରେ ଗୋଡ଼ାଇଲା ପ୍ରତାପୀ ଅସୁର
ଦେଖି ରାମ ବିନ୍ଧିଲେକ ପୁଣି ଲକ୍ଷେ ଶର । 168
ପର୍ବତ ଉପାଡ଼ି ଧରି ଦଇତ୍ୟ ଧାଇଁ
ରାମଙ୍କ ଉପରେ ପୁଣି ପ୍ରହାରିଲା ନେଇ ।
ଗଗନ ମାର୍ଗକୁ ପୁଣି ଚଳିଗଲେ ରାମ
ଧନୁର୍ଦ୍ଧର ଅନୁକ୍ଷଣେ ବିନ୍ଧୁଛନ୍ତି ବାଣ । 170
ବାଣ ଘାତେ ଦଶଦିଗ ହେଲା ଅନ୍ଧକାର
ନ ଦିଶନ୍ତି ରଘୁନାଥ ନ ଦିଶେ ଅସୁର ।
ଦେଖିଣ ଦେବତାମାନେ ଧାଇଁଲେ ବହନ
ଅସୁର ଉପରେ କଲେ ବାଣ ବରଷଣ । 172
ସୁନାସୀର ବଜ୍ରଶର ନେଇ ପ୍ରହାରିଲା
ଅସୁର ଅଙ୍ଗରେ ପଡ଼ି ବଜ୍ର ଭାଙ୍ଗିଗଲା ।
ଅନୁକ୍ଷଣ ଦୁଇଜନ ସମର ହୋଇଲା
କ୍ଷଣମାତ୍ର ଅସୁର ଯେ ଯୁଦ୍ଧ ନ ତେଜିଲା । 174
ତ୍ରିଶୂଳ ପିଟିଲେ ଶିବ ଅସୁର ଉପରେ
ଉପୁଡ଼ି ପଡ଼ିଲା ବାଜି ଅସୁର ଦେହରେ ।
ପୁଣି ଶୂଳ ଶକତି ଯେ ମାରନ୍ତି ଈଶ୍ୱର
ଅଗ୍ନି ସୂର୍ଯ୍ୟ ନଇଋତ ବରୁଣ କୁବେର । 176
ବିଜେକଲେ ଅସ୍ତ୍ର ଘେନି ଦୈତ୍ୟ ସନ୍ନିଧାନେ
ଯମରାଜା ବିଜେକଲେ ମହିଷ ବାହନେ । 178
ମରାଳ ବାହନେ ବିଜେ କଲେ ବେଦପତି
ଐରାବତ ଇନ୍ଦ୍ରଦେବ ଆରୋହି ଅଛନ୍ତି ।
ଅସୁରର ଚାରିପାଶେ ଆସି ବେଢ଼ିଗଲେ
ଯେ ଯାହାର ଅସ୍ତ୍ର ଶସ୍ତ୍ର ଧରି ଯୁଦ୍ଧ କଲେ ।
ଅସ୍ତ୍ରଘାତେ ଦଶଦିଗ ଦିଶେ ଅନ୍ଧକାର
ବଜ୍ର ଶକ୍ତି ଶୂଳ ଭଲ୍ଲ ମାରନ୍ତି ମୁଦ୍ଗର । 180
ଯେତେ ଯେତେ ଅସ୍ତ୍ରମାନ ଦେବତା ମାରନ୍ତି
ଅସୁର ଅଙ୍ଗରେ ପଡ଼ି ଚୂର୍ଣ୍ଣ ହୋଇଯାନ୍ତି ।
ଚାରିଦିନ ଅନୁକ୍ଷଣ ସଂଗ୍ରାମ ଲାଗିଲା
ପ୍ରତାପୀ ଅସୁର ରାଜା ଯୁଦ୍ଧେ ନ ଭୁଞ୍ଜିଲା । 182

ଈଶ୍ୱର ବୋଲନ୍ତି ଏବେ ଶୁଣ ଗୋ ପାର୍ବତୀ
ଦେବଗଣ ଅସ୍ତ୍ରଶସ୍ତ୍ର ଛାଡ଼ଣ ରହନ୍ତି ।
ଦୈତ୍ୟଯୁଦ୍ଧେ ଅଶକତ ଦେବଗଣ ହେଲେ
ରଘୁନାଥ ଘନ ଘନ ନିଃଶ୍ୱାସ ଛାଡ଼ିଲେ ।
ଯୁଦ୍ଧରେ ଦୈତ୍ୟଙ୍କୁ ଛାଡ଼ି ସର୍ବେ ଘୁଞ୍ଚିଗଲେ
ଯେ ଯାହାର ଆଶ୍ରମକୁ ବେଗେ ପଳାଇଲେ ।
ଶ୍ରୀରାମ ରହିଲେ ଯାଇ ପ୍ରଚଣ୍ଡ ଗିରିରେ
ଅସୁର ରହିଲା ଯାଇଁ ଆପଣା ମନ୍ଦିରେ ।
ହନୁମନ୍ତ ପଡ଼ିଅଛି ବିଲଙ୍କା ନଗରେ
ଅପୂର୍ବ ଚରିତ ଶୁଣ ଏଥୁ ଅନନ୍ତରେ ।
ଚିତ୍ରସେନ ଗନ୍ଧର୍ବଙ୍କୁ ବୋଇଲେ ଶ୍ରୀରାମ
ବିଲଙ୍କା ଭୁବନେ ମଲା ମୋର ହନୁମାନ ।
କହ ଜୀବନ ପାଇବ କେମନ୍ତେ ହନୁବୀର
ଧର୍ମେ ଧର୍ମେ ସୁମରନ୍ତି କୌଶଲ୍ୟା କୁମର ।
କି କରିବି ବୋଲି ମନେ ବିଚାରନ୍ତି ରାମ
କେମନ୍ତେ ବଞ୍ଚିବ ମୋର ଅଞ୍ଜନା ନନ୍ଦନ ।
ଇନ୍ଦ୍ରଙ୍କୁ ସ୍ମରଣ କଲେ ପ୍ରଭୁ ରଘୁବୀର
ତତକ୍ଷଣେ ଇନ୍ଦ୍ର ଆସି ମିଳିଲେ ଛାମୁର ।
ଶ୍ରୀରାମ ବୋଇଲେ କହ କହ ଶଚୀପତି
କେମନ୍ତେ ବଞ୍ଚିବ ଏଥେ ପବନ ସନ୍ତତି ।
ଯେବେ ଦେବ ହନୁମନ୍ତ ବୀରକୁ ଜୀଆଁଇ
ତେବେ ମୁହିଁ ଅସୁରଙ୍କୁ ନଷ୍ଟେ ଜିଣିବଇଁ ।
ଯଦ୍ୟପି ଜୀବନ ନ ପାଇବ ହନୁମାନ
ଧନୁ ଶସ୍ତ୍ର ଛାଡ଼ି ମୁହିଁ ଯିବି ଘୋରବନ ।
ଏହାଶୁଣି ସୁନାସୀର ସ୍ୱର୍ଗପୁର ଗଲେ
ହନୁର ଉପରେ ଆଣି ସୁଧା ବରଷିଲେ ।
ଚେତା ପାଇଣ ଉଠିଲା ଅଞ୍ଜନା କୁମର
ପ୍ରଚଣ୍ଡ ଗିରିକି ଚଳିଗଲା ହନୁବୀର ।
ଶ୍ରୀରାମଙ୍କ ପାଦତଳେ ପଡ଼ିଲାକ ଯାଇଁ
ଦେଖିଣ ହରଷ ହେଲେ ପ୍ରଭୁ ରଘୁସାଇଁ ।
ବୋଲନ୍ତି ହେ ହନୁମାନ ସାବଧାନେ ଶୁଣ
ଅଗୋଚର ସମର ଯେ ହେଲା ପାଞ୍ଚଦିନ
ଅନେକ ପ୍ରକାର ମୁଁ ଯେ ବିନ୍ଧିଲଇଁ ଶର
ନ ମଲା ପ୍ରତାପୀ ସେହି ବୃଣ୍ଡାଳ ଅସୁର ।
କେମନ୍ତେ ଦୈତ୍ୟଙ୍କୁ କହ ମାରିବଇଁ ମୁହିଁ
ବହୁତ ଝିଙ୍ଗାସି ମୋତେ କହିବେ ବୈଦେହୀ ।
ହନୁମନ୍ତ ବୋଇଲା ନ ଭାଳ ଦେବ କିଛି
ଯାହା ସେ ଦଇବ କପାଳରେ ଲେଖିଅଛି ।
ଶୁଣିକରି ଶ୍ରୀରାମ ଯେ ବେଗେ ଚଳିଗଲେ
ସମୁଦ୍ର ଭିତରେ ପଶି ସ୍ନାହାନ ସାରିଲେ ।
ସନ୍ଧ୍ୟା ତରପଣ ଆଦି ସାରି ରଘୁନାଥ
ବିଜେ କଲେ ଦେବ ଯାଇ ପ୍ରଚଣ୍ଡ ପର୍ବତ ।
ହନୁମନ୍ତ ଫଳ ମୂଳ ଯୋଗାଇଲେ ଆଣି
ସନ୍ତୋଷେ ଭୁଞ୍ଜିଲେ ପ୍ରଭୁ ସେ କୋଦଣ୍ଡପାଣି ।
ଶ୍ରମ ପାଇବାରୁ ରାମ ଅସୁର ଯୁଦ୍ଧରେ
ନିଦ୍ରାଦେବୀ ଘାରେ ଆସି ବେନି ନୟନରେ ।
ରଥର ଉପରେ ଯାଇ କଲେକ ଶୟନ
ଧୀରେ ଧୀରେ ପାଦ ଚିପେ ପବନ ନନ୍ଦନ ।

—※—

## ବିଲଙ୍କା ରାବଣର ଖେଦ, ରାମଚନ୍ଦ୍ରଙ୍କୁ ଦେବତାମାନଙ୍କର ସୀତା ଆଣିବାକୁ ପ୍ରାର୍ଥନା, ରାମଚନ୍ଦ୍ର ଦେବତାଙ୍କ କଥାରେ ସୀତା ଆଣିବା ସକାଶେ ହନୁମାନଙ୍କୁ ପଠାଇବା

ଏଥୁଅନ୍ତେ ଯାହା ହେଲା ଶୁଣ ଗୋ ପାର୍ବତୀ
ଯୁଦ୍ଧରୁ ପଳାଇଗଲା ବିଲଙ୍କା ନୃପତି ।
ଦେଖିଲା ବିଲଙ୍କାପୁରେ କେହିନାହିଁ ଜଣେ
ପୁରସବୁ ଭାଙ୍ଗି ପଡ଼ିଅଛି ଏଣେ ତେଣେ ।
ଜଗତୀ ଉପରେ ଯାଇ ଅସୁର ଉଠିଲା
ଦୁଇସହସ୍ର ଭୁଜ ନେଇ କପାଳେ ମାଇଲା ।
ଦଇବ ସୁମରି ବୋଲେ ବିଲଙ୍କାର ସାଇଁ
ଏତେବଡ଼ ସମ୍ପଦ ତ ମୋର ଗଲା କାହିଁ ।
ପୁତ୍ର ନାତିମାନେ ମୋର କେଣେ ଚାଲିଗଲେ
ରାଉତ ମାହୁନ୍ତ ଆଦି କେହି ନ ରହିଲେ ।
ସମସ୍ତଙ୍କୁ ରଘୁନାଥ ଯୁଦ୍ଧରେ ମାଇଲେ
ରହିବି କାହାକୁ ଘେନି ମୁହିଁ ଏହିପୁରେ ।
ଏମନ୍ତେ ବହୁତ ଖେଦ କରନ୍ତେ ନୃପତି
ଏ ସମୟେ ନୟନରେ ଘାରେ ନିଦ୍ରାବତୀ ।
ନିଶ୍ଚିନ୍ତେ ଶୟନ କଲା ଜଗତୀ ଉପରେ
କାଳନିଦ୍ରା ଘାରିଲା କି ବେନି ନୟନରେ ।

ଈଶ୍ୱର ବୋଲନ୍ତି ଏବେ ପାର୍ବତୀ ଗୋ ଶୁଣ
ଅପୂର୍ବ ଚରିତ ଏ ବିଲଙ୍କା ରାମାୟଣ ।
ଯେ ଶୁଣଇ ଶୁଣାଇ ସେ ମୁକତି ଲଭଇ
କହୁଅଛି ଏକମନେ ଶୁଣ ପ୍ରାଣସହି । 10
ଶଯ୍ୟାରେ ଭାଳନ୍ତି ବସି ଶ୍ରୀ ରଘୁନନ୍ଦନ
କେମନ୍ତେ ମରିବ ଦୁଷ୍ଟ ବିଲଙ୍କା ରାଜନ ।
ରାତ୍ର ନ ପାହୁଣୁ ବେଗେ ଶଯ୍ୟାରୁ ଉଠିଲେ
ମୁନ ବଙ୍କା ହୋଇଥିବା ଶର ସଳଖିଲେ । 12
ଅସୁର ମାରିବା ପାଇଁ ଘୋର ଚିନ୍ତା କଲେ
କି କରିବା କୁହ ହନୁ ବୋଲିଣ ବୋଇଲେ ।
ମାରୁତି ବୋଇଲା ଆହେ ପ୍ରଭୁ ରଘୁବୀର
ତୁ ପରମବ୍ରହ୍ମ ତୋତେ କିବା ଅଗୋଚର । 14
ଏ ଛାର କଥାକୁ କିମ୍ପା ଭାଳୁଛ ଗୋସାଇଁ
ଯାହାର ଆଜ୍ଞାରେ ସୃଷ୍ଟି ସ୍ଥିତି ଲୟ ହୋଇ ।
ଶୁଣିଣ କୋଦଣ୍ଡଧର ବହନ ଉଠିଲେ
ସମୁଦ୍ର କୂଳରେ ପଶି ସ୍ନାହାନ ସାରିଲେ । 16
ତର୍ପଣ ସାରିଣ ବେଗେ ଦେବ ରଘୁରାଣ
ଦେବତାମାନଙ୍କୁ କଲେ ମନରେ ସ୍ମରଣ ।
ଜାଣିପାରି ଦେବଗଣ ମିଳିଲେ ବହନ
ଯହିଁ ବିଜେ କରିଛନ୍ତି କୋଦଣ୍ଡଧାରଣ । 18
ସୁନାସୀର ବେଦପତି ଦେବ ପଶୁପତି
ଚନ୍ଦ୍ର ସୂର୍ଯ୍ୟ ନଇଋତ ଅଗ୍ନି ବୃହସ୍ପତି ।
ଯମ ଆଦି ବିଶ୍ୱକର୍ମା ବରୁଣ ପବନ
ଶ୍ରୀରଘୁନାଥଙ୍କୁ ଆସି କଲେ ଦରଶନ । 20
କହିଲେ ଦେବଙ୍କୁ ଚାହିଁ ପ୍ରଭୁ ରଘୁଶ୍ରେଷ୍ଠ
ତୁମର ନିମନ୍ତେ ସିନା ଆମ୍ଭର ଏ କଷ୍ଟ ।
ଏକଗୋଟି ଅସୁରକୁ ଜିଣି ନ ପାରିଲି
ବିଲଙ୍କା ରାବଣଠାରୁ କଷଣ ପାଇଲି । 22
କେମନ୍ତେ ମରିବ ଏହି ଦୁର୍ଜୟ ଦାନବ
କାଲିର ଯୁଦ୍ଧତ ଦେଖିଅଛ ସର୍ବଦେବ ।
ମୋର ହାତେ ନ ମରିବ ଦୁର୍ଦ୍ଦାନ୍ତ ଅସୁର
ସର୍ବଦେବଗଣେ ମିଳି କରି ଯା ସମର । 24
ସନ୍ନ୍ୟାସୀ ହୋଇବି ଯାଇ ବନସ୍ତେ ପଶିବି
ଅଯୋଧ୍ୟାପୁରକୁ ଆଉ କେଭେ ମୁଁ ଯିବି ।
କି ବୋଲିବେ ଗଲେ ମୋତେ ଜନକଦୁଲଣୀ
ବହୁତ ଇଙ୍ଗିତ କରି କହିବେକ ବାଣୀ । 26
ବୋଇଲେକ ଦେବଗଣ ଯୋଡ଼ି ବେନିକର
ନଇଲେ ଜାନକୀ କେଭେ ନ ମରେ ଅସୁର
ଜଗତ ଜନନୀ ସେହି ସୀତା ଠାକୁରାଣୀ
ପରମ ସାଧବୀ ସତୀ ଜନକଦୁଲଣୀ । 28
ଲକ୍ଷ୍ମୀ ନାରାୟଣ ତୁମ୍ଭେ ଦୁହେଁ ଅବତାର
ଦଇତ୍ୟ ମାରିବା ପାଇଁ ଜନ୍ମିଛ ସଂସାର ।
ଅଯୋଧ୍ୟାଠାକୁର ତୁମ୍ଭେ ସେ ତ ଠାକୁରାଣୀ
ଜନମିଛ ଦେବକାର୍ଯ୍ୟ ନିମନ୍ତେ ମେଦନୀ । 30
ସେ ସତୀ ନଇଲେ କେଭେ ନ ମରେ ଅସୁର
ଅଯୋଧ୍ୟାରୁ ଆଣୁ ଯାଇ ପବନ କୁମର ।
ଛିଦସେନ ଘେନିଯାଉ ଏହି ବିମାନକୁ
ବେଗେ ଯାଇ ଘେନିଆସୁ ଜଗତମାତାଙ୍କୁ । 32
ଏହା ଶୁଣି ଶ୍ରୀରାମ ସେ ବୋଲନ୍ତି ବଚନ
ଅସମ୍ଭବ କଥା କିମ୍ପା କୁହ ଦେବଗଣ ।
ପ୍ରତିଜ୍ଞା କରିଛି ମୁହିଁ ସତୀ ଅଗ୍ରତରେ
ଏକାକେ ମାରିବ ପଶି ବିଲଙ୍କା ନଗରେ । 34
ଜନକଦୁଲଣୀ ଯେବେ ଏଠାକୁ ଆସିବ
ମୋହର ପ୍ରତିଜ୍ଞା କହ କେମନ୍ତେ ରହିବ ।
ନୋହୁ ପଛେ ନ ମରୁ ଏ ବିଲଙ୍କା ରାଜନ
ଦେବଗଣେ କହ କିମ୍ପା ଏମନ୍ତ ବଚନ । 36 ॥
ସ୍ୱର୍ଗପୁର ଭୋଗକରୁ ଦୁର୍ଦ୍ଦାନ୍ତ ଅସୁର
ରାମନାମ ପଦ ପଛେ ନ ରହୁ ମୋହର ।
ଏ ଧନୁ କୋଦଣ୍ଡ ପଛେ ଧିକ ମୋର ହେଉ
ମୋହର ମାଂସକୁ ପଛେ ଗୃଧ୍ରପକ୍ଷୀ ଖାଉ । 38
ଜାନକୀର ମୁଖ ମୁହିଁ ଚାହିଁବି କେମନ୍ତେ
ସେ ସତୀ ଜାନକୀଦେବୀ କି ବୋଲିବେ ମୋତେ
ଯାଅ ଯାଅ ଦେବଗଣ ସେ ଯାହାର ପୁର
ପାରିଲେ ମାରିବି ମୁହିଁ ବିଲଙ୍କା ଅସୁର । 40
ଛିଦସେନ ଘେନିଯାଉ ସ୍ୱର୍ଗକୁ ବିମାନ
କିଷ୍କିନ୍ଧ୍ୟା ପୁରକୁ ଏବେ ଯାଉ ହନୁମାନ ।
ଯାଉଅଛି ପଶିବଇଁ ବନସ୍ତ ଭିତରେ
ରାମନାମ ପଦ ମୋର ବୁଡ଼ିଲା ଏଠାରେ । 42
ଏହାଶୁଣି ଦେବଗଣ କରିକୁ ଯୋଡ଼ିଲେ
ଏକାବେଳେ ଶ୍ରୀରାମଙ୍କ ପାଦରେ ପଡ଼ିଲେ ।
ହେ ରଘୁନନ୍ଦନ ଯେବେ ଏମନ୍ତ କରିବ
କାଲି ଦେବତାଙ୍କୁ ନେଇ ପାଦେ ଖଟାଇବ । 4…

ହେ ପ୍ରଭୁ ତୁ ଯେବେ ନିଶ୍ଚେ ପଶିବୁ ବନରେ
ଆମ୍ଭେ କେହ୍ନି ନ ରହିବୁ ଜାଣ ସ୍ୱର୍ଗପୁରେ ।
ତୋହର ସଙ୍ଗତେ ନିଶ୍ଚେ ବନବାସୀ ହେବୁ
ଅସୁର ପାଦରେ କେତେ ସେବା କରୁଥିବୁ ୪୬
ଏତେବୋଲି ଦେବଗଣ ହୃଦେ କଲେ ସ୍ତୁତି
ଜୟ ଜୟ ରଘୁନାଥ ଜାନକୀର ପତି ।
ଜୟ ଜୟ ରଘୁନାଥ ମହିମା ସାଗର
ଜୟ ଜୟ ରଘୁନାଥ ତାରିଲ ପଥର ।
ପାଦଲାଗି ସ୍ୱର୍ଗେଗଲା ଗଉତମ ନାରୀ
ଧନୁଭାଙ୍ଗି ବିଭାହେଲ ଜନକକୁମାରୀ । ୪୯
ଜୟ ଜୟ ରଘୁନାଥ ବଧିଲ ରାବଣ
ଲଙ୍କାରେ ମାଇଲ ନାଥ ବୀର କୁମ୍ଭକର୍ଣ୍ଣ ।
ଜୟ ଜୟ ରଘୁନାଥ ଇନ୍ଦ୍ରଜିତ ମାରି
ଦେବତାଙ୍କୁ ରଖିଅଛ ଦେଇ ସ୍ୱର୍ଗପୁରୀ ।
ଜୟ ରଘୁନାଥ ସୀତା ମାନ ଉଦ୍ଧାରଣ
ଜୟ ରାମ ବିଭୀଷଣ ଶରଣ ରକ୍ଷଣ । ୫୨
ଜୟ ଜୟ ରଘୁନାଥ କୌଶଲ୍ୟା ନନ୍ଦନ
ଯୋଗୀ ମୁନି ଯାର ପାଦ କରନ୍ତି ବନ୍ଦନ ।
ସେ ରାମ ଚରଣ ତଳେ ଅଛୁ ମୋର ମନ
ଶ୍ରୀପଦ ଶାରଳା ଦାସ ଭାବେ ଅନୁକ୍ଷଣ । ୫୪
ଏଥୁ ଅନନ୍ତରେ ଗୋ ପାର୍ବତୀ ଦେବୀ ଶୁଣ ।
ଏମନ୍ତ ବହୁତ ସ୍ତୁତି କଲେ ଦେବଗଣ ।
ରଘୁନାଥ ପାଦତଳେ କଲେ ନମସ୍କାର
କରନ୍ତୁ ଦେବଙ୍କୁ ରକ୍ଷା ଆହେ ରଘୁବୀର । ୫୬
ହେ ଶ୍ରୀରାମ ଏଥେ ଯେବେ ସୀତା ନ ଆସିବ
ଦୁର୍ଜ୍ଜୟ ଦାନବ ରାଜା କେବେ ନ ମରିବ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ଦେବଗଣ
ଜାଣିଲଣି ସଭିଲଣି ମୋର ହୁଡ଼ପଣ । ୫୮
ସେ ସତୀର ଅଗ୍ରତରେ ପ୍ରତିଜ୍ଞା ମୁଁ କଲି
ଏ ବିଲଙ୍କା ରାବଣକୁ ମାରିବି ବୋଇଲି ।
ଯେବେ ମାରି ନ ପାରିଲି ବିଲଙ୍କା ରାଜନ
କେମନ୍ତେ ଚାହିଁବି ମୁହିଁ ସତୀର ବଦନ । ୬୦
ବନବାସୀ ହେବି ପଛେ ବନସ୍ତେ ପଶିବି
ଅଯୋଧ୍ୟାପୁରକୁ ଆଉ କେବେ ମୁଁ ନ ଯିବି
ଏହାଶୁଣି ଦେବଗଣେ ଚକିତ ହୋଇଲେ
କି କରିବା ବୋଲି ଏବେ ସକଳେ ଭାଳିଲେ । ୬୨

ଦେଖି ବ୍ରହ୍ମା ସରସ୍ୱତୀ ବଦନକୁ ଚାହିଁ
ମାଗୋ ତୁମ୍ଭେ ରାମ କଣ୍ଠେ ବିଜେକର ଯାଇଁ ।
ସୀତା ଆଣିବାକୁ ରାମ ବୋଲନ୍ତୁ ଯେମନ୍ତେ
ଏ ଅସୁର ମଲେ ସ୍ୱର୍ଗେ ରହିବ ନିଶ୍ଚିନ୍ତେ । ୬୪
ଶୁଣି ଦେବୀ ସରସ୍ୱତୀ ବେଗେ ଚଳିଗଲେ
ତତକ୍ଷଣେ ରାମଙ୍କ କଣ୍ଠେ ଯାଇ ବିଜେକଲେ ।
ମୋହିଲେ ରାମଙ୍କ ମନ ସରସ୍ୱତୀ ଯାଇ
କହିଲେ ଦେବତାଗଣେ ଚାହିଁ ରଘୁସାଇଁ । ୬୬
କି ପ୍ରକାରେ ଅଯୋଧ୍ୟାରୁ ଜାନକୀ ଆସିବ
କେ ଯାଇ ଜାନକୀ ଆଗେ ବାରତା କହିବ ।
ଦେବଗଣେ ବୋଇଲେ ଯେ ହନୁମନ୍ତ ଯାଉ
ସତୀଙ୍କ ଆଗରେ ଯାଇ ବାରତା ସେ କହୁ । ୬୮
ଆସିବେ ବାରତା ପାଇ ଦେବୀ ବଇଦେହୀ
ନଇଲେ ଜାନକୀ କେବେ ଦୈତ୍ୟ ନ ମରଇ ।
ଏହାଶୁଣି ରାମଚନ୍ଦ୍ର ହୋଇଲେ ମଉନ
ଯାଅ ବାବୁ ଅଯୋଧ୍ୟାକୁ ପବନ ନନ୍ଦନ । ୭୦
ସତୀକ କହିବୁ ସବୁ ଯୁଦ୍ଧର ସନ୍ଦେଶ
ସୀତାଙ୍କୁ ବାରତା କହି ବେଗେ ଘେନିଆସ ।
ଲକ୍ଷ୍ମଣ ଆସିବ ଏକା ସତୀ ସଙ୍ଗତର
ପାରିବୁ କି ଯାଇ କହ ପବନକୁମର । ୭୨
ହନୁମନ୍ତ ବୋଲେ ଦେବ ଆଜ୍ଞା ଦେଲେଯିବି
ଅଯୋଧ୍ୟା ରାଣୀଙ୍କୁ ବେଗେ ଘେନିଣ ଆସିବି ।
ଶ୍ରୀରାମ ବୋଇଲେ ଯେବେ ଆସେ ମୋରସତୀ
ବାଟରେ ସମ୍ଭାଳି ତୁହି ଆଣିବୁ ମାରୁତି । ୭୪
ଶୁଣି ହନୁମନ୍ତ ତହୁଁ ଯୋଡ଼ି ବେନିକର
ଯାଉଅଛି ଅଯୋଧ୍ୟାକୁ ଆହେ ରଘୁବୀର ।
ଶ୍ରୀରାମ ବୋଇଲେ ହେଉ ତୋହର କଲ୍ୟାଣ
ସାବଧାନ ହୋଇ ଏଥେ ସତୀକି ତୁ ଆଣ । ୭୬
ଶୁଣି ପାଦେ ପଡ଼ିଲାକ ଅଞ୍ଜନାର ବଳା
ଗଗନମାର୍ଗରେ ହନୁ ବହନମିଣ ଗଲା ।
ବୋଇଲେକ ଦେବଗଣ ଯୋଡ଼ି ବେନିକର
ଦେବତାଙ୍କ କାର୍ଯ୍ୟ କର ପ୍ରଭୁ ରଘୁବୀର । ୭୮
ଶୁଣି ରଘୁନାଥ ମନେ ହରଷ ହୋଇଲେ
ଯେ ଯାହା ସ୍ଥାନକୁ ତହୁଁ ଦେବଗଣ ଗଲେ ।
ଏଥୁଅନ୍ତେ ଯାହା ହେଲା ପାର୍ବତୀ ଗୋ ଶୁଣ
ଅପୂର୍ବ ଚରିତ ଏ ବିଲଙ୍କା ରାମାୟଣ । ୮୦

ଗଗନ ମାର୍ଗରେ ବୀର ହନୁମନ୍ତ ଗଲା
କିଷ୍କିନ୍ଧ୍ୟା ନଗରେ ଯାଇ ପ୍ରବେଶ ହୋଇଲା ।
ଆସ୍ଥାନରେ ବସିଅଛି ରାଜା ସୁଗ୍ରୀବର
ଅଙ୍ଗଦ ସୁଷେଣ ଆଦି ଛନ୍ତି ମହାବୀର । ୮୨
ନଳ ନୀଳ ଜାମ୍ବବାନ ଆଦି ବୀରମାନେ
ହାତଯୋଡ଼ି ରହିଛନ୍ତି ଯେ ଯାହାର ସ୍ଥାନେ ।
ଏସନ ସମୟେ ହନୁ ମିଳିଲାକ ଯାଇ
ଆସ୍ଥାନରେ ସୁଗ୍ରୀବଙ୍କୁ ଓଳଗି ହୁଅଇ । ୮୪
ଜାମ୍ବବାନେ ନମସ୍କାର କଲା ହନୁବୀର
ଯାହାକୁ ଯେ ବଧି କଲା ଅଞ୍ଜନା କୁମର ।
ସୁଗ୍ରୀବ ପଚ୍ଛରେ କହ ହନୁ ଥିଲ କାହିଁ
ଅଯୋଧ୍ୟା ବାରତା ବାବୁ କହନ ବୁଝାଇ । ୮୬
କୁଶଳେ ଅଛନ୍ତିଟିକି ପ୍ରଭୁ ରଘୁମଣି
କୁଶଳେ ଅଛନ୍ତିଟିକି ଜନକ ଦୁଲଣୀ ।
ହନୁମନ୍ତ ବୋଲେ ଦେବ ଶୁଣ ସାବଧାନେ
ରାମଚନ୍ଦ୍ର ରହିଛନ୍ତି ବିଲଙ୍କା ଭୁବନେ । ୮୮
ଥିଲା ଯେ ସହସ୍ରଶିରା ନାମରେ ରାବଣ
ତାହାର ସଙ୍ଗତେ ରାମ କଲେ ଘୋରରଣ ।
ତା ପୁଅ ନାତିକ ରାମ ସମରେ ମାଇଲେ
ଗୋଟିଏକ ନରନାରୀ ନଗ୍ରେ ନ ରଖିଲେ ୯୦
ଏକମାତ୍ର ବଞ୍ଚିଅଛି ବିଲଙ୍କା ରାଜନ
ତାକୁ ମାରି ନ ପାରିଲେ କୌଶଲ୍ୟା ନନ୍ଦନ ।
ଦେବଗଣେ ବୋଇଲେକ ଶୁଣ ହେ ରାଘବ
ଜାନକୀ ନଇଲେ କେଭେ ଦୈତ୍ୟ ନ ମରବ ୯୨
ତେଣୁ ଆଜ୍ଞାଦେଲେ ମୋତେ କୌଶଲ୍ୟାନନ୍ଦନ
ସୀତା ଆଣି ଯାଉଅଛି ଅଯୋଧ୍ୟା ଭୁବନ ।
ଶୁଣିଣ ସୁଗ୍ରୀବ ଅତି ବିସ୍ମୟ ହୋଇଲା
ଶ୍ରୀରାମ ବହୁତ କଷ୍ଟ ପାଇଲେ ବୋଇଲା । ୯୪
ଆଣିବୁ ସୀତାକୁ ଯେବେ ବାବୁ ହନୁବୀର
ଏହିବାଟେ ଘେନିଯିବୁ ପବନ କୁମର ।
ଏହା ଶୁଣି ହନୁମନ୍ତ କଲା ସନମତ
ଗଗନ ମାର୍ଗରେ ଉଡ଼ି ଚଳିଲା ତୁରିତ । ୯୬
ଦ୍ୱିତୀୟ ଦିନରେ ସେହି ପବନର ବଳା
ସରଯୂ କୂଳରେ ଯାଇ ପ୍ରବେଶ ହୋଇଲା ।
କିଛି ଫଳମୂଳ ଖାଇ ବଞ୍ଚିଲା ସେ ଦିନ
ସରଯୂ ନଦୀର ତୀରେ କଲାକ ଶୟନ । ୯୮

ରାତ୍ର ପ୍ରଭାତରୁ ଉଠି କରଇ ଗମନ
ପ୍ରବେଶ ହୋଇଲା ଯାଇଁ ଅଯୋଧ୍ୟା ଭୁବନ ।
ନଗର ଭିତରେ ହନୁ ପଶିଲାକ ଯାଇ
ଦେଖିଣ ଅଯୋଧ୍ୟାଲୋକେ ଅଇଲେକ ଧାଇଁ । 10
ଜଣେ ଜଣେ ଶ୍ରୀରାମଙ୍କ ବାରତା ପୁଛନ୍ତି
କିଛି ନ କହଇ ଯାଏ ପବନ ସନ୍ତତି ।
ତାର ପଛେ ନରନାରୀ ଅଛନ୍ତି ଗୋଡ଼ାଇ
ମାରୁତି ମିଳିଲା ବେଗେ ସୀତା ପାଶେ ଯାଇ । 10
ବେନି ପାଦତଳେ ପଡ଼ି ପବନ ନନ୍ଦନ
ହାତଯୋଡ଼ି ଉଠି ପୁଣି କଲାକ ପ୍ରଣାମ ।
ପୁଚ୍ଛନ୍ତି ହନୁକୁ ଚାହିଁ ଜନକ ଦୁଲଣୀ
କେମନ୍ତେ ଅଛନ୍ତି କହ ପ୍ରଭୁ ରଘୁମଣି । 104.
କି ବାରତା ଆଣିଅଛୁ କହ ହନୁମନ୍ତ
ଜାଣିଛୁକି ବିଲଙ୍କାରେ ରାମଙ୍କ ବୃତ୍ତାନ୍ତ ।
ହନୁମନ୍ତ ବୋଲେ ଦେବୀ ସାବଧାନେ ଶୁଣ
ବିଲଙ୍କାରେ ଘୋରଯୁଦ୍ଧ କଲେ ରଘୁରାଣ । 10
ପୁତ୍ରନାତି ନରଲୋକ ସକଳ ମାଇଲେ
ନଗର ଭିତରେ ଗୋଟିଏକ ନ ରଖିଲେ ।
ଏକା ମାତ୍ର ରହିଅଛି ବିଲଙ୍କା ରାଜନ
ଶସ୍ତ୍ର ନ ଭେଦେ ତା ଦେହେ ବଜ୍ରହୁଁ କଠିନ
ତାକୁ ଯୁଦ୍ଧେ ନ ମାରନ୍ତି ରଘୁକୁଳସାଇଁ
ମୋତେ ପଠିଆଇ ଦେଲେ ତୁମ୍ଭେ ଯିବାପାଇଁ 1
ବିଳମ୍ବ ନ କର ମାତ ଚାଲ ଅତି ବେଗେ
ବୀରବର ଲକ୍ଷ୍ମଣଙ୍କୁ ଘେନିଯିବ ସଙ୍ଗେ । 110
ଏହା ଶୁଣି ମହାସତୀ ହସିଣ ଉଠିଲେ
ବହୁତ ପ୍ରତିଜ୍ଞା କରି ରାମ ଯାଇଥିଲେ ।
ଯୁଦ୍ଧେ ମାରି ନ ପାରିଲେ ପାମର ଦୈତ୍ୟକୁ
ଆରେ ବାବୁ ହନୁମନ୍ତ ଡାକ ଲକ୍ଷ୍ମଣକୁ । 112
ଏହାଶୁଣି ହନୁମନ୍ତ ବେଗେ ଗଲା ଚଳି
ମିଳିଲା କୌଶଲ୍ୟା ପୁରେ ଯାଇ ମହାବଳୀ ।
କଉଶଲ୍ୟା ପାଦେ ଦଣ୍ଡବତ କଲା ଯାଇ
କଉଶଲ୍ୟା ପଚ୍ଛରନ୍ତି ରାମ ମୋର କାହିଁ । 114
ଶ୍ରୀରାମ ବାରତା କହନରେ ହନୁବୀର
କିପରି ଅଛଇ ବାବୁ ମୋ କୋଦଣ୍ଡଧର ।
ହନୁମନ୍ତ ବୋଲେ ମାତା ବିଲଙ୍କା ନଗରେ
ଘୋରରଣ କରୁଛନ୍ତି ଦୈତ୍ୟ ସଙ୍ଗତରେ ।

ମୋତେ ପଠାଇଅଛନ୍ତି ରଘୁକୁଳସାଇଁ
ଲକ୍ଷ୍ମଣ ସହିତେ ସେନଯିବ ବଇଦେହୀ ।
ଶୁଣିଣ କୌଶଲ୍ୟାଦେବୀ ହେଲେ କ୍ରୋଧଭର
ଆହା ଆହା କେତେ କଷ୍ଟ ପାଇଲୁ କୁମର ।
ଚଉଦ ବରଷ ଯାଏ ନ ଦେଖିଲି ତୋତେ
ଏବେ ତୁ ଅନସ୍ଥା ପୁଣି କରିଗଲୁ ମୋତେ ।
କେତେଦିନେ ଅଯୋଧ୍ୟାକୁ ଆସିବେ ଶ୍ରୀରାମ
ସତ କରି କହ ମୋତେ ବୀର ହନୁମାନ ।
ହନୁମନ୍ତ ବୋଲେ ଏଥୁଁ ସୀତାଦେବୀ ଗଲେ
ଅବଶ୍ୟ ଶ୍ରୀ ରଘୁନାଥ ଆସିବେକ ଭଲେ ।
ଗୋଳ ଶୁଣି ସଉମିତ୍ରୀ ସେଠାରେ ମିଳିଲେ
ହନୁମନ୍ତ ଯାଇ ତାଙ୍କ ପାଦେ ପ୍ରଣମିଲେ ।
ହନୁ ବୋଲେ ରାମ ଛନ୍ତି ବଲଙ୍କା ଭୁବନ
ତୁମ୍ଭଙ୍କୁ ନେବାର ପାଇଁ ପେଶିଲେ ଶ୍ରୀରାମ ।
ଜାନକୀ ଯିବାକୁ ଆଜ୍ଞା ଦେଲେ ରଘୁବୀର
ଶୁଣିଣ ହରଷ ହେଲେ ସୁମିତ୍ରା କୁମର ।
ଜାନକୀଙ୍କ ସନ୍ନିଧାନେ ଚହିଁ ଚଳିଗଲେ
ଜାନକୀଙ୍କ ପାଦତଳେ ଦଣ୍ଡବତ କଲେ ।
ଶୁଣଗୋ ଜାନକୀ ଆସିଅଛି ହନୁମାନ
ଏଥକୁ ପଠାଇଛନ୍ତି ଶ୍ରୀ ରଘୁନନ୍ଦନ ।
ବଲଙ୍କାକୁ ଯିବାପାଇଁ କହିଛନ୍ତି ରାମ
ଜାନକୀ କହିଲେ ଶୁଣ ହେ ବୀର ଲକ୍ଷ୍ମଣ ।
ଅସୁରକୁ ମାରି ନ ପାରିଲେ ରଘୁବୀର
ଚାଲିଯିବା ଲକ୍ଷ୍ମଣ ହେ ରଥ ସଜକର ।
ଶୁଣି ସଉମିତ୍ରୀ ମନେ ସନ୍ତୋଷ ହୋଇଲେ
ରଥ ସାଜ ବୋଲି ବେଗେ ମନ୍ତ୍ରୀକି କହିଲେ
ବେଗେଣ ସୁମନ୍ତ ମନ୍ତ୍ରୀ ବିମାନ ସାଜନ୍ତି
ବଶିଷ୍ଠ ଶ୍ରୀରାମଙ୍କର ବାରତା ପୁଚ୍ଛନ୍ତି ।
ଅଯୋଧ୍ୟାର ଲୋକେ ପୁଣି ସକଳେ ଆସନ୍ତି
ଶ୍ରୀରାମଙ୍କ ବାରତା ହନୁକୁ ପଚାରନ୍ତି ।

—*—

## ହନୁମାନ, ଲକ୍ଷ୍ମଣ ଓ ସୀତାଙ୍କୁ ଘେନି ବଲଙ୍କା ଯିବା ବାଟରେ ସୁଗ୍ରୀବ ସହିତ ଦେଖା, ବଲଙ୍କାରେ ପ୍ରବେଶ

ଏଥୁଅନନ୍ତରେ ଗୋ ପାର୍ବତୀ ଦେବୀ ଶୁଣ
ରାତ୍ରଆସି ପ୍ରବେଶ ହୋଇଲା ସେହିଦିନ ।
ଭୋଜନ ସାରିଣ ଚହିଁ ପବନର ବଳା
ନିଶ୍ଚିନ୍ତରେ ଜାନକୀଙ୍କ ପୁରରେ ରହିଲା ।
ଏମନ୍ତ ସମୟେ ଦେବୀ ଜନକନନ୍ଦିନୀ
ପଲଙ୍କ ଉପରେ ଶଜେ କଲେ କମଳିନୀ ।
ହନୁମନ୍ତକୁ ଯେ ଝଜେ କଉକ ଡାକିଲେ
ରାମଙ୍କ ବାରତା ବାବୁ କହରେ ବୋଇଲେ ।
କରଯୋଡ଼ି କହଇ ଯେ ପବନର ସୁତ
ଯେତେକ ବଲଙ୍କାପୁରେ ଥିଲେକ ଦଇତ୍ୟ ।
ସମସ୍ତଙ୍କୁ ନହତ କଲେକ ରଘୁନାଥ
ଏକମାତ୍ର ବଞ୍ଚିଅଛି ଲକ୍ଷଶିରା ପୁତ୍ର ।
ଦେବୀ ବୋଇଲେ କେମନ୍ତେ ହୋଇଲା ସମର
ବୁଝାଇଣ କହ ମୋତେ ଅଞ୍ଜନାକୁମର ।
ଖଟେ ଶୋଇ ଶୁଣୁଛନ୍ତି ଜନକକୁମାରୀ
ଏଥୁଅନ୍ତେ ପାହିଗଲା ସେ ଦିନ ଶର୍ବରୀ ।
ପ୍ରଭାତୁ ବେଗେଣ ସ୍ନାନ ସାରି ମହାସତୀ
ବଲଙ୍କାକୁ ଯିବାପାଇଁ ପ୍ରସ୍ତୁତ ହୁଅନ୍ତି ।
ଲକ୍ଷ୍ମଣ ଯେ ସ୍ନାନ ସନ୍ଧ୍ୟା ବେଗେଣ ସାରିଲେ
ବିମାନ ଗୋଟିଏ ଝଟେ ଯାଇଁ ମଣ୍ଡାଇଲେ ।
ବାହାର ହୋଇଲେ ଧନୁଶର ଘେନି ଘରୁ
ଓଳଗି ମେଲାଣି ମାଗି ମାତାଙ୍କ ଛାମୁରୁ ।
ଅନ୍ତଃପୁରୁ ସୀତାଦେବୀ ବାହାର ହୋଇଲେ ।
ଅଳଙ୍କାରମାନ ଅଙ୍ଗେ ଆଭରଣ ହେଲେ ।
ସୁକ୍ଷୀନ ବସନ ପହରନ୍ତି ବଇଦେହୀ
ଝରିଲଗା ପାଟଶାଢ଼ୀ ଉପରଣି ଦେଇ ।
ପ୍ରଣାମ କଲେକ ଯାଇଁ ଶାଶୁଙ୍କ ପୟରେ
ଆରୋହଣ କଲେ ଦେବୀ ବିମାନ ଉପରେ ।
ରାଣୀମାନେ ସବୁ ତାଙ୍କ ପଛେ ଗୋଡ଼ାଇଲେ
ଲକ୍ଷ୍ମଣଙ୍କୁ ଏକେ ଏକେ ତିଆରି କହିଲେ ।
ବାବୁରେ ସଖୀକ ଭୁଲି ନ ଛାଡ଼ିବୁ କ୍ଷଣେ
ସଖୀକ ପ୍ରମାଦ ପୁଣି ନ ଘଟଇ ଯେସଣେ ।

ତାହା ଶୁଣି ଲକ୍ଷ୍ମଣ ଯେ ବେନକର ଯୋଡ଼ି
କଲ୍ୟାଣ କର ଯେମନ୍ତେ ଆସିବୁ ବାହୁଡ଼ି ।
ଏଥୁଅନ୍ତେ ଲକ୍ଷ୍ମଣ ଯେ ହନୁକୁ କହଇ
ବେଗେ ନେଇ ଯାଅ ବାବୁ ବଲଙ୍କାର ଭୂଇଁ ।
ଆଜ୍ଞା ପାଇ ହନୁମନ୍ତ ତରତର ହେଲା
ରାମ ପାଦେ ଚିତ୍ତ ଦେଇ ଯାନ ସେ ବାହିଲା ।
ଶୂନ୍ୟେ ରଥ ବାହିନେଲା ପବନର ବଳା
ଗଗନ ମାର୍ଗରେ ବେଗେ ରଥ ଚଳିଗଲା ।
ଅଯୋଧ୍ୟା କଟକ ମଧ୍ୟୁ ହୋଇଲା ବାହାର
ଅଯୋଧ୍ୟାର ଲୋକେ ଦେଖି ହୁଅନ୍ତି କାତର ।
ବାହୁଡ଼ ଘରକୁ ଯାଅ ବୋଲନ୍ତି ଲକ୍ଷ୍ମଣ
ବିମାନ ଗଗନମାର୍ଗେ ଉଡ଼େ ଘନଘନ ।
ସରଯୂକୁ ପାର ହୋଇ ଗଲାକ ବିମାନ
ରହିଲେ ଅଯୋଧ୍ୟା ଲୋକେ ସରଯୂ କୂଳେଣ
ସେଠାରୁ ନଗର ଲୋକେ ବାହୁଡ଼ ଆସିଲେ
ବିମାନରେ ବସି ସୀତା ତହୁଁ ଚଳିଗଲେ ।
ଏଥୁ ଅନନ୍ତରେ ଶୂନ୍ୟେ ରଥ ଚଳିଗଲା
ଗଙ୍ଗାନଦୀ ତୀରେ ଯାଇ ବିମାନ ମିଳିଲା ।
ସନ୍ଧ୍ୟା ଆସି ପରବେଶ ହୋଇଲା ସେ ଦିନ
ଗଙ୍ଗାନଦୀ ତୀରେ ରହିଲେକ ତିନିଜଣ ।
ଫଳ ମୂଳ ଭୁଞ୍ଜି ତହିଁ ନିଶ୍ଚିନ୍ତେ ରହିଲେ
ହନୁକୁ ଅନାଇ ଦେବୀ ଜାନକୀ ବୋଇଲେ ।
ବନବାସୁ ଅଯୋଧ୍ୟାକୁ ଯେ ଦିନ ଅଇଲୁ
ଏଠାରେ ତ ଆମ୍ଭେମାନେ ଦିନେ ରହିଥିଲୁ ।
ଏହାଶୁଣି ହନୁମନ୍ତ ସନମତ କଲେ
ରଥର ଉପରେ ଦେବୀ ଜାନକୀ ଶୋଇଲେ ।
ଧନୁଶର ଘେନି ଜଗି ବସିଲା ଲକ୍ଷ୍ମଣ
ରାତ୍ରଗୋଟି ପ୍ରଭାତ ଯେ ହୋଇଲା ସେ ଦିନ ।
ପ୍ରଭାତରୁ ବିମାନକୁ ଦେଲେକ ଚଳାଇ
ଚିତ୍ରକୂଟ ପର୍ବତରେ ମିଳିଲେକ ଯାଇ ।
ହନୁକୁ ଗୁହିଁଣ ପୁଣି ଜାନକୀ ବୋଇଲେ
ଏହିଠାରୁ ଦୈତ୍ୟ ମୋତେ ହରି ନେଇଥିଲେ ।
ଆସି ଫଳମୂଳ ଭିକ୍ଷା ମାଗିଲାକ ମୋତେ
ଦେବାବେଳେ ଧରି ବସାଇଲା ନିଜ ରଥେ ।
ମୋତେ ଏଥୁ ଘେନି ପଳାଇଲା ଲଙ୍କାପୁରୀ
ରଖିଲା ଅଶୋକ ବନେ ନେଇ ଦଶଶିରୀ ।

ଏହାଶୁଣି ହନୁମନ୍ତ ସନମତ କଲା
ସେଠାରୁ ବିମାନ ପୁଣି ବେଗେ ଚଳିଗଲା ।
କିଷ୍କିନ୍ଧ୍ୟାରେ ପରବେଶ ହେଲା ରହିବର
ସିଂହଦ୍ୱାରେ ରଥରୁ ଓହ୍ଲାଇ ହନୁବୀର ।
ସୀତାଦେବୀ ପଚାରନ୍ତି ଏ କାହାର ଭୁବନ
ସୁଗ୍ରୀବ କଟକ ଏହି କହେ ହନୁମାନ ।
ପୁର ଭିତରକୁ ଗଲା ପବନର ବଳା
ସୁଗ୍ରୀବର ଚରଣରେ ଓଳଗି ହୋଇଲା ।
ବେନକର ଯୋଡ଼ି ବୋଲେ ବୀର ହନୁମାନ
ସିଂହଦ୍ୱାରେ ବିଜେ ଦେବୀ ଜାନକୀ ଲକ୍ଷ୍ମଣ ।
ଶୁଣିଣ ସୁଗ୍ରୀବ ରାଜା ବହନ ଉଠିଲା
ତାରା ମହାଦେଈଙ୍କ ସେ ହକାରି ବୋଇଲା ।
ଜାନକୀ ଲକ୍ଷ୍ମଣ ରହିଛନ୍ତି ସିଂହଦ୍ୱାରେ
ସମାଦର କରି ତାଙ୍କୁ ଆଣ ଅନ୍ତଃପୁରେ ।
ଶୁଣି ଲଣ୍ଡଭଣ୍ଡ ହୋଇ ତାରା ମହାଦେଈ
ପାଟେକ ପିନ୍ଧିଣ ପାଟେ ଉତ୍ତରୀ ଦେଇ ।
ଅର୍ଘ୍ୟସ୍ଥାଳୀ ଘେନି କରେ ହୋଇଲେ ବାହାର
ସଙ୍ଗତରେ ଗୋଡ଼ାଇଲେ କେତେ ବାମାବର ।
ସିଂହଦ୍ୱାର ପାର ହୋଇ ଗଲେ ମହାସତୀ
ଦେଖିଲେ ରଥରେ ବିଜେ ରାମ ପ୍ରିୟବତୀ ।
ତାହାଙ୍କ ଚରଣ ଧରି ଓଳଗି ହୋଇଲେ
ସୁବର୍ଣ୍ଣର ଅର୍ଘ୍ୟସ୍ଥାଳୀ ନେଇ ବନ୍ଦାଇଲେ ।
ଦେଖିଣ ଜାନକୀ ଦେବୀ ହରଷ ହୋଇଲେ
ରଥରୁ ଉତୁରି ବେଗେ ତାଙ୍କୁ କୋଳକଲେ ।
ତାରା ପରିବାରୀମାନେ ବେଢ଼ିଣ ଅଛନ୍ତି
ଚନ୍ଦ୍ରମାବଦନୀ ସୀତା କଟକେ ପଶନ୍ତି ।
ସୁବାସ ଜଳରେ ସୀତା ପାଦ ପଖାଳିଲେ
ପଲଙ୍କ ଉପରେ ତାଙ୍କୁ ନେଇ ବସାଇଲେ ।
ସ୍ୱାଦୁ ପକ୍ୱ ଦ୍ରବ୍ୟମାନ ଖାଇବାକୁ ଦେଲେ
ଗଉରବ କରି ବେନି କରକୁ ଯୋଡ଼ିଲେ ।
ଭୁ ଦେବୀ ସାଧବୀ ରଘୁନାଥର ଘରଣୀ
ସ୍ୱୟଂ କମଳାମ୍ଭୀ ତୁହି ଜନକଦୁଲଣୀ ।
ଜଗତର ଠାକୁରାଣୀ ହୋଇ ଅବତାର
ଅସୁର ମାରଣ ତୁହି ପାଳିବୁ ସଂସାର ।
ମୁହିଁ ନାରୀ ତୁରି ତୋର ଦାସୀ ପରିବାରୀ
ଦାସୀର ଦାସୀଙ୍କ ସଙ୍ଗେ ନୁହଇଟି ସରି ।

ଜାନକୀ ବୋଇଲେ ତୁମ୍ଭେ ମିତ ଯେ ଆମ୍ଭର
ଏକ ଆତ୍ମା ଅଟଇ ଯେ ତୁମ୍ଭର ଆମ୍ଭର ।
ଏହା ଶୁଣି ତାରା ଦେବୀ ପାଦରେ ପଡ଼ିଲା
ଜାନକୀ ଦେବୀଙ୍କ ପାଦ ସେବାରେ ଲାଗିଲା ।
ସୁଗ୍ରୀବର ରାଜା ଯାଇଁ ଭେଟିଲା ଲକ୍ଷ୍ମଣ
ପାଦପଦ୍ମ ତଳେ ପଡ଼ି କଲାକ ପ୍ରଣାମ ।
ଏହା ଦେଖିଣ ବୋଇଲେ ସୁମିତ୍ରା କୁମର
ତୁମେ ମୋର ଜ୍ୟେଷ୍ଠଭାଇ ଅଟ ନୃପବର
କନିଷ୍ଠ ଅଟଇ ମୁହିଁ ତୁମ୍ଭେ ବଡ଼ଭାଇ
କେଉଁପରି ନମସ୍କାର କଲ କପିସାଇଁ ।
ସୁଗ୍ରୀବ ବୋଇଲା ମୁଁ ତୁମ୍ଭର ପରିଚର
ତୁମ୍ଭର ସଞ୍ଚିଲା ଭୋଗ କରଇ ଏ ପୁର ।
ଏହା ଶୁଣି ସଉମିତ୍ରୀ ହରଷ ହୋଇଲେ
ସୁଗ୍ରୀବ ନୃପତି ସଙ୍ଗେ କଟକେ ପଶିଲେ ।
ରତ୍ନ ପଲଙ୍କରେ ବିଜେ କଲେ ବୀର ଯାଇଁ
ଖାଇବାର ଦ୍ରବ୍ୟ ସୁଗ୍ରୀବର ଦେଲେ ନେଇ ।
ଆନନ୍ଦେ ଭୋଜନ କଲେ ସୁମିତ୍ରା ନନ୍ଦନ
ପଲଙ୍କେ ଶୟନ କଲେ ସୁଖେ ଦୁଇଜଣ ।
ଲକ୍ଷ୍ମଣଙ୍କ ପାଦ ହନୁମନ୍ତ ମଞ୍ଜାଳିଲା
କ୍ରମେ ସେ ଦିନର କ୍ଷଣି ପ୍ରଭାତ ହୋଇଲା
ପ୍ରଭାତକାଳରୁ ବେଗେ ଲକ୍ଷ୍ମଣ ଉଠିଲେ
ମୁଖ ପଖାଳିଣ ଅନ୍ତଃପୁରେ ବିଜେ କଲେ ।
ଜାନକୀଙ୍କ ପାଦତଳେ କଲେକ ପ୍ରଣାମ
ବିଳମ୍ବ ହେଉଛି ଆସ ଯିବା ଗୋ ବହନ
ଶୁଣିଣ ଜାନକୀ ଦେବୀ ହୋଇଲେ ବାହାର
ରଥରେ ବସିଲେ ରଥ ଦିଶିଲା ସୁନ୍ଦର ।
ହନୁମନ୍ତ ସୁଗ୍ରୀବକୁ କଲେ ନମସ୍କାର
ସୁଗ୍ରୀବର ଲକ୍ଷ୍ମଣଙ୍କୁ କଲେ ନମସ୍କାର ।
ବୋଇଲା ଏ ବାଟ ଦେଇ ଯିବେ ରଘୁମଣି
ଶ୍ରୀରାମଙ୍କୁ କହିବ ହେ ମୋହର ଦର୍ପୂମ୍ମୀ ।
ଏହାଶୁଣି ସଉମିତ୍ରୀ କଲେ ସନମତ
ତାରା ଧଇଲେକ ଯାଇ ଜାନକୀଙ୍କ ହସ୍ତ ।
ଶ୍ରୀରାମଙ୍କୁ ଘେନି ଥରେ ଆସିବ ଗୋ ମିତ
ଦର୍ଶନ କରିବି ବାରେ ପ୍ରଭୁ ରଘୁନାଥ ।
ଏହା ଶୁଣି ସନମତ କଲେ ବଇଦେହୀ
ଗଗନ ମାର୍ଗରେ ରଥ ଦେଲେକ ଚଳାଇ ।

କିଷ୍କିନ୍ଧ୍ୟା କଟକ ମଧ୍ୟୁ ରଥ ଚଳିଗଲା
ଲଙ୍କାପୁର ସନ୍ନିକଟରେ ଗଗନେ ମିଳିଲା ।
ଜାନକୀ ବୋଇଲେ ଶୁଣ ହେ ବୀର ଲକ୍ଷ୍ମଣ
ଦଣ୍ଡେ ରହି ଦେଖିବାକ ଏ ଲଙ୍କା ଭୁବନ ।
ଲକ୍ଷ୍ମଣ ବୋଇଲେ ଯିବା ବହୁଦୂର ପଥ
ଚେତଣେ ଚାହିଁ ରହିଥିବେ ଦେବ ରଘୁନାଥ ।
ଏଥୁ ଅନନ୍ତରେ ଲଙ୍କା ପାର ହୋଇଗଲେ
ବିଲଙ୍କାପୁରକୁ ରଥ ଚଳାଇଣ ଦେଲେ ।
ତୃତୀୟ ପ୍ରହର ହୋଇଅଛି ଦିନକର
ବିଲଙ୍କା ନଗରେ ପହଞ୍ଚିଲା ରଥବର ।
ପ୍ରଚଣ୍ଡ ପର୍ବତେ ଅଛନ୍ତି ରଘୁନାଥ
ଗଗନ ମାର୍ଗରେ ଯାଇଁ ମିଳିଲାକ ରଥ ।
ବିମାନରେ ଥାଇ ଚାହିଁଦେଲେ ବଇଦେହୀ
କାଣ୍ଡ କୋଦଣ୍ଡ ଧରିଣ ବିଜେ ରଘୁସାଇଁ ।
ଦେଖିଣ ଜାନକୀ ଦେବୀ ହରଷ ହୋଇଲେ
ବିମାନ ନେଇଣ ହନୁ ପର୍ବତେ ଥୋଇଲେ ।
ରଥ ଦେଖି ରାମଚନ୍ଦ୍ର ହରଷ ହୋଇଲେ
ରଥପରେ ବସିଛନ୍ତି ସୀତାଙ୍କୁ ଦେଖିଲେ ।
ଜାନକୀ ଦେବୀଙ୍କୁ ଦେଖି କୋଦଣ୍ଡଧାରଣ
ଲଜ୍ଜା ପାଇ ବସିଲେକ ପୋତିଣ ବଦନ ।
ରଥର ଉପରୁ ବେଗେ ସତୀ ଉତୁରିଲେ
ହସ ହସ ହୋଇ ରାମ ପାଦରେ ପଡ଼ିଲେ ।
ଓଳଗି ହୋଇଲେ ସତୀ ଯୋଡ଼ି ବେନିକର
ଲକ୍ଷ୍ମଣ ପଡ଼ିଲେ ରଘୁନାଥଙ୍କ ପୟର ।
ଲକ୍ଷ୍ମଣଙ୍କୁ ପଚାରନ୍ତି ସେ କୋଦଣ୍ଡ ସାଇଁ
ଅଯୋଧ୍ୟା କୁଶଳ ମୋତେ କହନରେ ଭାଇ ।
ଏହା ଶୁଣି ସଉମିତ୍ରୀ ଯୋଡ଼ି ବେନିକର
ତୁମ୍ଭ ବିହୁନେ ଦେବ ଅଯୋଧ୍ୟା ଅନ୍ଧକାର ।
ସମସ୍ତ କୁଶଳ ଅଟେ ପ୍ରଭୁ ରଘୁନାନ
ତୁମ୍ଭ ବିହୁନେ ବିକଳ ହୋନ୍ତି ପ୍ରଜାଗଣ ।
ଶୁଣିଣ ଜ.ନକୀ ଦେବୀ ବୋଇଲେ ହେ ନାଥ
କେଉଁଠି ମାଲ ଯୋଦ୍ଧା ଅଟେ ପାପିଷ୍ଠ ଦଇତ୍ୟ
ଏତେ କଷ୍ଟ ଦେଲା ସେ ପାମର ଦୈତ୍ୟ କାହିଁ
ଯମ ଭୁବନକୁ ଆଜ ପଠାଇବି ମୁହିଁ ।
ଏହା ଶୁଣି ରଘୁନାଥ ହରଷ ହୋଇଲେ
ଜାନକୀଙ୍କ ଭୁଜ ଧରି କୋଳେ ବସାଇଲେ ।

ଜାନକୀଙ୍କ ମୁଖ ଶୁଣି ବୋଲନ୍ତି ଶ୍ରୀରାମ
ଅଯୋଧ୍ୟାରୁ ଆସିବାର ହେଲା କେତେଦିନ ।
ଲକ୍ଷ୍ମଣ ବୋଇଲେ ଦେବ ମକର ମାସରେ
ଅଯୋଧ୍ୟା ନଗର ଛାଡ଼ି ଆଇଁଲୁ ଶୂନ୍ୟରେ
ଏ ଆଷାଢ଼ ମାସକୁ ଯେ ଷଡ଼ମାସ ହେଲା
ବଲଙ୍କା ଭୁବନେ ରଥ ପ୍ରବେଶ ହୋଇଲା ।
ଏହା ଶୁଣି ରଘୁନାଥ ହରଷ ହୋଇଲେ
ଜାନକୀଙ୍କୁ ଘେନି ଦେବ ସମୁଦ୍ରେ ପଶିଲେ ।
ସ୍ନାନ କଲେ ଯାଇଁ ଦେବ କୋଦଣ୍ଡଧାରଣ
ତର୍ପଣ ସାରିଲେ ସୀତା ହସ୍ତକୁ ଧରଣ ।
ପର୍ବତ ଉପରେ ବିଜେ କଲେ ରଘୁବୀର
ଫଳମୂଳ ସୀତ ରାମ କରନ୍ତି ଆହାର ।

—*—

## ରାମ ଓ ସୀତାଙ୍କର ସହସ୍ର ରାବଣ ବିଷୟରେ କଥୋପକଥନ, ସହସା ରାବଣ ସହିତ ହନୁମାନ, ଲକ୍ଷ୍ମଣ ଓ ରାମଚନ୍ଦ୍ରଙ୍କର ଯୁଦ୍ଧ

ଏଥୁ ଅନନ୍ତରେ ଶୁଣ ଦେବୀ ହୈମବତୀ
ସୂର୍ଯ୍ୟ ଅସ୍ତ ହେଲା ସନ୍ଧ୍ୟା ହୋଇଲାକ ରାତି ।
ରଥରେ ଶୋଇଲେ ବଇଦେହୀ ରଘୁପତି
ଯୁଦ୍ଧକଥା ସବୁ ରାମ ସୀତାଙ୍କୁ କହନ୍ତି ।
ହନୁମନ୍ତ ଚନ୍ଦ୍ରସେନ ଲକ୍ଷ୍ମଣ ଶୋଇଲେ
ସେଦିନ ସୁଖରେ ତହିଁ ରଜନୀ ବଞ୍ଚିଲେ ।
ହନୁକୁ ବୋଇଲେ ପ୍ରଭୁ ରଘୁକୁଳ ବୀର
ଯୁଦ୍ଧକୁ ତ ନ ଆଇଲା ପ୍ରତାପୀ ଅସୁର ।
ଭୟ କରି ପଶିଅଛି କଟକ ଭିତରେ
ଆଗେ ଦ୍ୱନ୍ଦ୍ୱ କରି ତୁହି ଅସୁର ସଙ୍ଗରେ ।
ଶୁଣି ହନୁମନ୍ତ ବୀର ଆନନ୍ଦ ହୋଇଲା
ଶ୍ରୀରାମ ସୀତାଙ୍କ ପାଦେ ଯାଇଁ ଓଳଗିଲା ।
ବଲଙ୍କାକୁ ବାହାରିଲା ପବନ କୁମାର
ଯାଅ ବୋଲି ଆଜ୍ଞା ଦେଲେ ପ୍ରଭୁ ରଘୁବୀର ।
ବଲଙ୍କାକୁ ଚଳିଗଲା ବୀର ହନୁମାନ
ଉତ୍ତର ଦୁଆର ଗଡ଼େ ପଶିଲା ବହନ ।
ଘୋର ଗରଜନ କଲା ପବନର ବଳା
ଆରେରେ ଅସୁର ବୋଲି ଦୈତ୍ୟକୁ ଡାକିଲା
ନଗରେ ରହିଲୁ କମ୍ପା ନଷ୍ଟନ୍ତ ହୋଇଣ
କେଉଁ ଦିନରେ ପାପିଷ୍ଠ ପାଇବୁ ମରଣ ।
ଉଠି ଆସି ରାମ ଭୁଲେ କରି ତୁ ସମର
ନଷ୍ଟେ କ୍ଷତ୍ରିପଣ ଆଜ ବୁଝିବା ତୋହର ।
ଏହା ଶୁଣି ଦୈତ୍ୟପତି କୋପେଣ ଗର୍ଜ୍ଜଇ
ହନୁମନ୍ତ ମୁଖଚାହିଁ ଅସୁର ବୋଲଇ ।
ଆରେରେ ବାନର ତୋର କେବଣ ସାହସ
ଅକାରଣେ ଏ ଅଜୟ ଗଡ଼ କଲୁ ନାଶ ।
ଜ୍ଞାତି ବନ୍ଧୁ ଭାଇ ବର୍ଗ ସୋଦର ନାଶିଲୁ
ପୁନ ନାତି ସହିତରେ ସକଳ ମାଇଲୁ ।
ଏବେ ନଷ୍ଟେ ମୋର ହସ୍ତେ ଯିବୁ ଯମପୁର
ମୋହର ହସ୍ତରେ ନଷ୍ଟେ ମରଣ ତୁମ୍ଭର ।
କହୁଁ କହୁଁ ଧାଇଁଆସେ ସେହି ଦୈତ୍ୟ ସାଇଁ
ହନୁ ଉପରେ ବଜ୍ରବିଧା ମାଇଲାକ ନେଇ ।
ବିଧାଘାତେ ହନୁମାନ ପଡ଼ିଲା ଭୂମିରେ
ରାମ ରାମ ସୁମରଣ ଉଠି ଗଗନରେ ।
ତହିଁ ଆସି ଅସୁରକୁ ଆକର୍ଷିଲା ପୁଣି
ନଠାଇଣ ବଜ୍ରବିଧା ମାରେ ବୀରମଣି ।
ପ୍ରତାପୀ ଅସୁର ପାଇ ସେହି ବିଧାଘାତ
ମୂର୍ଚ୍ଛାହୋଇ ଭୂମିତଳେ ପଡ଼ିଲା ଦଇତ୍ୟ ।
ଘୋରତର ରକ୍ତଗୋଷ୍ଠା ଛାଡ଼ିଲା ସେ କାଳେ
ଭୟରେ ପୃଥିବୀ ଦେବୀ ପଶିଲେ ପାତାଳେ ।
ପ୍ରଚଣ୍ଡ ଗିର୍ଜ୍ଜେ ରକ୍ତ ଛୁଟେ ଘନ ଘନ
ଶ୍ରୀରାମ ବୋଇଲେ ଆହେ ଶୁଣ ଚନ୍ଦ୍ରସେନ ।
ଅସୁର ସଙ୍ଗରେ ଯୁଦ୍ଧ କରେ ହନୁମାନ
ରଥ ସଜକର ମୁହିଁ ଯିବଇଁ ବହନ ।
ଏହା ଯୁଦ୍ଧ କରୁଅଛି ଅଞ୍ଜନା ତନୟ
ଦୁର୍ଦ୍ଦାନ୍ତ ଦାନବ ଅଟେ ସେ ବଲଙ୍କାରାୟ ।
ଏହା ଶୁଣି ସଉମିତ୍ରୀ ଯୋଡ଼ି ବେନିକର
ବୋଇଲେ ହେ ଦେବ ମୁହିଁ ଦେଖିବି ଅସୁର
କେଡ଼େ ବଡ଼ ମାଲ ଯୋଦ୍ଧା ଅଟଇ ଦଇତ୍ୟ
ଶୁଣିଣ ସାନନ୍ଦ ହେଲେ ପ୍ରଭୁ ରଘୁନାଥ ।
ଲକ୍ଷ୍ମଣକୁ ବୋଇଲେ ତୁ ଯେବେ ଯିବୁ ବାବୁ
ମାୟାବୀ ଦଇତ୍ୟ ଯୁଦ୍ଧ ଜାଣି ନ ପାରିବୁ ।
ବଳେ ମହା ବଳୀୟାର ଅଟଇ ଅସୁର
ବାହୁବଳେ କରଇ ସେ ଅନେକ ସମର ।

ସମ୍ଭାଳ ତା ସଙ୍ଗେ ଯୁଦ୍ଧ କରିବୁ ଲକ୍ଷ୍ମଣ
ତୋତେ ଏକା ପେଶିବାକୁ ନବଳେ ମୋମନ ।
ଏହା ଶୁଣି ସଉମିତ୍ରୀ ପଡ଼ିଲେ ପାଦରେ
ରଥରେ ବସିଲେ ଧନୁଶର ଧରି କରେ ।
ଶତସେନ ବୀର ରଥ ଶୂନ୍ୟେ ନେଲା ବାହି
ନମିଷକେ ଦୈତ୍ୟପୁରେ ପଶିଲେ ଝସାଇ ।
ରଥ ପରେ ଥାଇ ବୀର ସୁମିତ୍ରା ନନ୍ଦନ
ଦେଖିଲେ ବିଲଙ୍କାପୁର ଅତି ଶୋଭାବନ ।
ଲଙ୍କାପୁରଠାରୁ ଶୋଭା ଦିଶେ ଦଶଗୁଣ
କଟକ ଜଗତି ଦିଶେ ଯେସନେ ସୁବର୍ଣ୍ଣ ।
ଦୁଇଲକ୍ଷ ଯୁଗ ଅଟେ ତାହାର ବିସ୍ତାର
ଲକ୍ଷେ ହାତ ଉଚ୍ଚ ପୁଣି ଅଟଇ ପ୍ରାଚୀର ।
ଧନ୍ୟ ଏ ପୁରକୁ ନାଶକଲ ରଘୁନାନ
ବହୁତ ପ୍ରଶଂସା କଲେ ସୁମିତ୍ରା ନନ୍ଦନ ।
ଏମନ୍ତ ମନରେ ଭାଳ ପଶିଲେ ଭିତରେ
ଦେଖିଲେକ ହନୁଯୁଝେ ଦୈତ୍ୟ ସଙ୍ଗତରେ ।
ବିଧା ମରାମରି ବେନି ବୀର ହେଉଛନ୍ତି
ଗଡ଼ନ୍ତି ପଡ଼ନ୍ତି ପୁଣି ଗର୍ଜନ୍ତି ତର୍ଜନ୍ତି ।
ଏହା ଦେଖି ସଉମିତ୍ରୀ ହେଲେ ଅଗ୍ରସର
କୋଦଣ୍ଡ ଗୁଣରେ ହୁଳ ଚଢ଼ାଇଲେ ବୀର ।
ଲକ୍ଷେ ବାଣ ତୂଣୁ କାଢ଼ି ଗୁଣେ ବସାଇଲେ
ଦୈତ୍ୟ ଉପରକୁ କୋପେ ନଠାଇ ବିନ୍ଧିଲେ ।
ଅସୁର ଉପରେ ଯାଇଁ ପଡ଼ିଲା ସେ ବାଣ
ଘାଏ ଘୁମାଇଲା ସେଇ ଲଙ୍କାର ରାବଣ ।
ଚେତନା ପାଇଣ ଦୈତ୍ୟ ନଖକ୍ଷି ବୁଝିଁଲା
ନୁହନ୍ତି ଶ୍ରୀରାମ ବୋଲି ଦଇତ୍ୟ ଜାଣିଲା ।
ପଚାରିଲା ଧନୁର୍ଦ୍ଧର କାହିଁ ତୋର ଘର
ବଜ୍ରସମ ଲାଗିଲାକ ଏ ତୋହର ଶର ।
କହ କାହା ପୁତ୍ର ତୁହି କେଉଁ ରାଜ୍ୟେ ଘର
ତୁ କମ୍ପାଇଁ ମୋର ସଙ୍ଗେ କରୁଛୁ ସମର ।
ଲକ୍ଷ୍ମଣ ବୋଇଲେ ଶୁଣ ବିଲଙ୍କା ଈଶ୍ୱର
ତୋର ବଂଶ ନାଶକଲେ ଯେଉଁ ଧନୁର୍ଦ୍ଧର ।
ସେ ପ୍ରଭୁଙ୍କ ସାନଭାଇ ମୋ ନାମ ଲକ୍ଷ୍ମଣ
ଆଜ ଏହି ବାଣେ ତୋର ଦେହିବ ପରାଣ ।
ଦଇତ ବୋଇଲା ତୁମ୍ଭଠାରେ ଦୟା ନାହିଁ
ଅକାରଣେ ମୋର ପୁର ଭାଙ୍ଗିଲ କମ୍ପାଇଁ ।

ଅଦୃଶ୍ୟ ଶ୍ରୀରାମଙ୍କୁ ମୁଁ ମାରିବି ସମରେ
କାରତ ରଖିବି ମୁହିଁ ଯୁଗ ଯୁଗାନ୍ତରେ ।
ଏହା ଶୁଣି ସଉମିତ୍ରୀ କରେ ଧନୁ ଧରି
ଅଯୁତ ସହସ୍ର ବାଣ ବିନ୍ଧିଲେ ଓଟାରି ।
ଅସୁର ଉପରେ ପଡ଼ି ବାଣ ଭାଙ୍ଗିଗଲା
ଏହା ଦେଖି କୋପଭରେ ଅସୁର ଧାଇଁଲା ।
ଲକ୍ଷ୍ମଣଙ୍କ ବିମାନକୁ ଧଇଲାକ ଯାଇ
ଯେତେ ବାଣ ମାରୁଛନ୍ତି ଶ୍ରୀରାମଙ୍କ ଭାଇ ।
ଅସୁର ଦେହରେ ପଡ଼ି ସବୁ ହୁଏ ଚୁର
ଦେଖିଣ ଆଶ୍ଚର୍ଯ୍ୟ ହେଲେ ସୁମିତ୍ରା କୁମର ।
ଦୁଇସହସ୍ର ହସ୍ତରେ ବିମାନ ଧଇଲା
ଲକ୍ଷ୍ମଣଙ୍କ ରଥବର ଚଳ ନ ପାରିଲା ।
ହନୁମନ୍ତ ଯାଇ ବଜ୍ର ବିଧାଏ ମାଇଲା
ଡେଇଁ ଯାଇ ଅସୁରର କାନ୍ଧରେ ବସିଲା ।
ସହସ୍ରେକ ମୁଣ୍ଡ ଧରି ଝିଙ୍କି ହନୁମାନ
ପଦାଘାତେ କଲା ତାର ମୁକୁଟ ମର୍ଦ୍ଦନ ।
ରଥ ଗୁଡ଼ ଦୈତ୍ୟ ବେଗେ ହନୁକୁ ଧରଇ
ଗଳଗାଜ ବିଧାଏ ପ୍ରହାର କଲା ନେଇ ।
ବିଧ ଘାତେ ହନୁମନ୍ତ ଭୂମିରେ ପଡ଼ିଲା
ହନୁମନ୍ତ ରାମ ରାମ ସୁମରି ଉଠିଲା ।
ଚେତନା ପାଇଣ କ୍ରୋଧେ ଦୈତ୍ୟକୁ ଧଇଲା
ଗୋଡ଼େ ଗୋଡ଼ ହାତେ ହାତ ଛନ୍ଦି ପକାଇଲା ।
ବେନିବୀର ପୁଣି ଛନ୍ଦିଁ ଯୁଦ୍ଧ ଆରମ୍ଭିଲେ
ଧରାଧରି ହୋଇ ଭୂମି ତଳରେ ପଡ଼ିଲେ ।
ଘନ ଘନ ଗରଜନ୍ତି ଉଠେ ରି ଉଡ଼ନ୍ତି
ମହାକୋପେ ବେନି ବୀରେ ଯୁଦ୍ଧ କରୁଛନ୍ତି ।
ପାଦଲାଗି ଘରଦ୍ୱାର ହେଉଅଛି ଚୂର
ବିଲଙ୍କା ନଗର ସବୁ କମ୍ପେ ଥରହର ।
ଏହା ଦେଖି ସଉମିତ୍ରୀ ଅପସରି ଗଲେ
ଗଗନ ମାର୍ଗରେ ନିଜ ରଥକୁ ରଖିଲେ ।
ହସ୍ତୀ ସଙ୍ଗେ ହସ୍ତୀ ଯେହ୍ନେ କରଇ ସମର
ତେସନେ ସମର କରୁଛନ୍ତି ବେନି ବୀର ।
କି ଅବା କେଶରୀ ସଙ୍ଗେ ଯୁଝନ୍ତି କେଶରୀ
ବାହାସ୍ଫୋଟ ମାରି ଦୁହେଁ ହୋଉନ୍ତି ମରାମରି ।
ସ୍ୱର୍ଗପୁରେ ଦେବଗଣେ ଭୟରେ କମ୍ପିଲେ
ଧନ୍ୟ ଧନ୍ୟ ହନୁମାନ ବୋଲି ପ୍ରଶଂସିଲେ ।

ଶୂନ୍ୟମାର୍ଗେ ଥାଇ ଧନୁ ଧରଣ ଲକ୍ଷ୍ମଣ
କୋପେଣ ବନ୍ଧିଲେ ଜ୍ୱାଳାବଳୀ ନାମେ ବାଣ ।
ଅସୁର ଉପରେ ଶର ପଡ଼ିଲାକ ଯାଇ
ଦେଖିଣ ଧାଇଁଲା କୋପେ ସେ ବଳିଙ୍କା ସାଇଁ
ସହସ୍ର ଭୁଜେ ସହସ୍ର ମୁଦ୍‌ଗର ଧଇଲା
ଲକ୍ଷ୍ମଣଙ୍କ ରଥପରେ ନେଇ କଣ୍ଡ଼ିଲା ।
ଏହାଦେଖି ଅପସର ଗଲେ ବୀରମଣି
ବାବଲ ବାଣରେ ଦେଲେ ମୁଦ୍‌ଗରକୁ ହାଣି ।
ମୁଦ୍‌ଗର ବନ୍ଧନେ ଦୈତ୍ୟ ନିଶସ୍ତ୍ର ହୋଇଲା
ପୁଣି ସହସ୍ରେକ ପାଟି ବିସ୍ତାରି ଧାଇଁଲା ।
ରଥ ଉପରକୁ ଦୈତ୍ୟ ପଡ଼ିଲାକ ଡେଇଁ
ବିମାନକୁ ଘେନ ପଳାଇଲେ ରାମଭାଇ ।
ଗଗନ ମାର୍ଗରେ ରଖିଲେକ ରଥବର
ମହାକୋପେ ବନ୍ଧିଲେକ ପରଶୁ ମୁଦ୍‌ଗର ।
ଅସୁର ଉପରେ ବାଣ ପଡ଼ିହେଲା ଚୂର
ଦୁର୍ବାର ସମର କଲା ପ୍ରତାପୀ ଅସୁର ।
ପୁନରପି ଲକ୍ଷେବାଣ ବନ୍ଧିଲେ ଲକ୍ଷ୍ମଣ
ଦଇତର ଅଙ୍ଗେ ପଡ଼ି ସବୁ ହେଲା ଚୂର୍ଣ୍ଣ ।
ଦେବତାମାନଙ୍କୁ ତ୍ରାସ ଲାଗେ ଗୁରୁତର
ଘୋରଯୁଦ୍ଧ ଆରମ୍ଭିଲେ ପବନ କୁମର ।
ହନୁମନ୍ତ ସଙ୍ଗେ ଘେନ ଆରମ୍ଭିଲା ରଣ
ଗଗନର ଦେବଗଣ ହେଲେ କମ୍ପମାନ ।
ଯୁଦ୍ଧହେଲା ଦୁଇଦିନ ଅଢ଼ାଇ ପ୍ରହର
କେହି ନ ଘୁଞ୍ଚନ୍ତି ଯୁଝୁଛନ୍ତି ବେନବୀର ।
ପାଦଗାମୀ ହୋଇ ତହିଁ ଯୁଝିଲେ ଲକ୍ଷ୍ମଣ
ଶତ୍ରସେନକୁ ବୋଇଲେ ଘେନଯା ବିମାନ ।
ଜାନକୀଙ୍କୁ ସମ୍ଭାଳକୁ ପର୍ବତ ଉପର
ଶ୍ରୀରାମ ନଇଲେ ନ ମରିବ ଏ ଅସୁର ।
ଏହାଶୁଣି ଶତ୍ରସେନ ବେଗେ ଚଳିଗଲା
ଦେବରଥ ଘେନ ରାମ ଆଗରେ ମିଳିଲା
ପାଦେ ପଡ଼ି ଜଣାଇଲା ବୀର ଶତ୍ରସେନ
ଘୋର ଯୁଦ୍ଧ କରୁଛନ୍ତି ସୁମିତ୍ରା ନନ୍ଦନ ।
ତିନିଦିନ ହେଲା କ୍ଷଣେ ନାହିଁ ତା ବିଶ୍ରାମ
ଯୁଦ୍ଧେ ଅସକତ ହେଲେ ପବନ ନନ୍ଦନ ।
ଏହାଶୁଣି ରଘୁନାଥ ଚମତ୍କାର ହେଲେ
ଜାନକୀଙ୍କୁ ଶତ୍ରସେନ ସମ୍ଭାଳ ବୋଇଲେ ।

ଦେଖାଇ ଅସୁର କେହ୍ନେ କରଇ ସମର
ଏତେବୋଲି ଧାଇଁଲେକ ପ୍ରଭୁ ରଘୁବୀର ।
ଜାନକୀ ବୋଇଲେ କେହୁ ମାରି ନ ପାରିଲେ
ବଳାତ୍କାର ଯୁଦ୍ଧ ନ କରିବ ତାର ଭୁଲେ ।
ଜାନକୀଙ୍କ ବାକ୍ୟ ଶୁଣି କହେ ବୀରମଣି
ଏହିଠାରେ ଥାଅ ତୁମ୍ଭେ ଜନକ ନନ୍ଦିନୀ ।
ଆଜ ନିଶ୍ଚେ ମାରିବଇଁ ବଳିଙ୍କା ରାଜନ
ଆଉ ଅନ୍ୟ କିଛି କଥା ମନରେ ନ ଘେନ ।
ଧାଇଁ ପ୍ରବେଶିଲେ କରେ ଧରି ଧନୁଶର
ଦୈତ୍ୟ ଉପରକୁ ବନ୍ଧିଲେକ ଲକ୍ଷେଶର ।
ପୁଣି ତିନିଲକ୍ଷ ବାଣ ବନ୍ଧିଲେ ଶ୍ରୀରାମ
ବାଣରେ ଅଦୃଶ୍ୟ ହେଲା ସୂର୍ଯ୍ୟଙ୍କ କିରଣ ।
ମେଦିନୀ ଦିଶିଲା ବାଣଘାତେ ଅନ୍ଧକାର
ଅସୁର ଉପରେ ପଡ଼ି ସବୁ ହେଲା ଚୂର ।
ବାବଲ ବାଣ ଯେ ପୁଣି ବନ୍ଧିଲେ ଶ୍ରୀରାମ
ପାଶୁପତ ବଜ୍ରବାଣ ବନ୍ଧିଲେ ଲକ୍ଷ୍ମଣ ।
ପର୍ବତ ଗୋଟିଏ ହନୁମନ୍ତ ଉପାଡ଼ିଲା
ଦଇତ ଉପରେ ସେ ଗିରିକ କଣ୍ଡ଼ିଲା ।
ଅସୁର ଉପରେ ପଡ଼ି ଗିରି ହେଲା ଚୂର
ଶର ସବୁ ଭାଙ୍ଗିଯାଇ ପଡ଼ିଲା ଭୂମିର ।
ଏହା ଦେଖି ସଉମିତ୍ରୀ ଚମତ୍କାର ହେଲେ
ଏଗାର ସହସ୍ର ବାଣ କୋପେଣ ବନ୍ଧିଲେ ।
ତହିଁ ପଛେ ତିନିଲକ୍ଷ ବାଣ ପ୍ରହାରିଲେ
ଅସୁର ଅଙ୍ଗରେ ପଡ଼ି ଉଖୁଡ଼ି ପଡ଼ିଲେ ।
ଦଇତ୍ୟ ଉପରେ ପଡ଼ି ସବୁ ହେଲା ଚୂର
ଦେଖି ଚମତ୍କାର ହେଲେ ସୁମିତ୍ରା କୁମର ।
ଶ୍ରୀରାମ ବୋଇଲେ ବାବୁ ଧନୁଧର ଆଣ୍ଟେ
ଦୈତ୍ୟର ମରଣ କାଳ ହୋଇଲା ନିକଟେ ।
ଶୁଣିଣ ଲକ୍ଷ୍ମଣ ବନ୍ଧିଲେକ ବଜ୍ରବାଣ
ଅସୁର ଉପରେ ବାଜି ବାଣ ହେଲା ଚୂର୍ଣ୍ଣ ।
ବ୍ରହ୍ମ ଶକ୍ତି ବନ୍ଧିଲେକ ପ୍ରଭୁ ରଘୁବୀର
ବ୍ରହ୍ମଶୂଳ ତାର ପଛେ କଲେକ ପ୍ରହାର ।
ଶକ୍ତି ଭଲ୍ଲି କୁନ୍ତ ଶଲ୍ୟ ବର୍ଚ୍ଛା ଯେ ମୁଦ୍‌ଗର
ଏକାବେଳେ ବନ୍ଧିଲେକ ପ୍ରଭୁ ରାମବୀର ।
ଦଇତ୍ୟ ଅଙ୍ଗରେ ପଡ଼ି ସବୁ ହେଲା ଚୂର୍ଣ୍ଣ
ତାହାଦେଖି ଚମତ୍କାର ହେଲେ ରଘୁରାଣ ।

ଶ୍ରୀରାମ ଲକ୍ଷ୍ମଣ ଯେତେ ବାଣ ଶିଖିଥିଲେ
ଏକାବେଳେ ମନ୍ତ୍ରପଢ଼ି ଦୈତ୍ୟକୁ ମାଇଲେ ।
ଦଇତ୍ୟ ଅଙ୍ଗରେ ପଡ଼ି ସବୁ ହେଲା ଚୂର
ଧନୁ ଅସ୍ତ୍ର ଛାଡ଼ି ଉଭା ହେଲେ ରଘୁବୀର ।
ଲକ୍ଷ୍ମଣଙ୍କୁ ବୋଇଲେ ନ ମରିବ ଅସୁର
କି ବୁଦ୍ଧି କରିବା କହ ଭାଇରେ ମୋହର ।
ଏହାଶୁଣି ସଉମିତ୍ରୀ ଧନୁଧରି କରେ
ଅଙ୍କୁପଣ ପ୍ରହାରିଲେ ଦଇତ ଉପରେ ।
କୁଠାର ମୁଦ୍‌ଗର ଶକ୍ତି ଧରିଣ ବିନ୍ଧିଲେ
ଶୂଳଶକ୍ତି ବଜ୍ରଶକ୍ତି କୋପେ ପ୍ରହାରିଲେ ।
ଯେଉଁ ବାଣେ ପୃଥ୍ୱୀ କମ୍ପେ ଗିରିପଡ଼େ ଝରି
ସେହି ଶର ଚୂର୍ଣ୍ଣ ହେଲା ଦୈତ୍ୟଅଙ୍ଗେ ପଡ଼ି ।
ଦେଖିଣ ବିସ୍ମୟ ହେଲେ ତେଜି ଶରାସନ
ଶସ୍ତ୍ର ଛାଡି ଉଭା ହେଲେ ସୁମିତ୍ରା ନନ୍ଦନ ।
ଦେଖି ହନୁମନ୍ତ ବୀର ମହାକୋପ କଲା
ପର୍ବତ ଗୋଟାଏ ହନୁ ଉପାଡ଼ି ଆଣିଲା ।
ଅସୁର ଉପରେ ବେଗେ ପିଟିଲାକ ନେଇ
ଚୂର୍ଣ୍ଣହୋଇ ଗିରିବର ପଡ଼େ ଭାଙ୍ଗିଯାଇ ।
ଦେଖି ହନୁମନ୍ତ ବୀର କୋପେଣ ଧାଇଁଲା
ବଜ୍ରବିଧା ଗୋଟା ଦୈତ୍ୟ ପିଠିରେ ମାଇଲା ।
ବିଧାଘାତେ ଦୈତ୍ୟପତି ପଡ଼ିଲା ଭୂମିରେ
ଆଣ୍ଠୁ ଭରା ଦେଇ ଉଠେ କିଛିକ୍ଷଣ ପରେ ।
କୋପେ ଗଳଗାଜ ଉଠି ଦରଶ୍ରି ଧରଇ
ଆରେରେ ବାନର ବୋଲି ତର୍ଜେ କଡ଼ିଇ
ପକାଇ ହନୁକୁ ମାଡ଼ି ବସିଲା ଅସୁର
ବାର ବାର ଭୁଜଦଣ୍ଡ ମାରେ ଦୈତ୍ୟବୀର ।
ଓଲଟାଇ ମାଡ଼ି ହନୁ ବସିଲା ଦୈତ୍ୟକୁ
ପୁଣି ଦୈତ୍ୟ ଓଲଟାଇ ଧଇଲା ହନୁକୁ ।
ଧରାଧରି ହୋଇ ବେନିଜନ ଯୁଦ୍ଧକଲେ
ଶ୍ରୀରାମ ଲକ୍ଷ୍ମଣ ଘୁ ଞ୍ଚି ଦୂରରେ ରହିଲେ ।
ହନୁମନ୍ତ ଅସୁର ଯେ କରୁଛନ୍ତି ରଣ
ପାଦଘାତେ ମେଦିନୀ କମ୍ପିଲା ଘନ ଘନ ।
ଭୁଜେ ଭୁଜ ଅଙ୍ଗେ ଅଙ୍ଗ ପିଟାପିଟି ହୋନ୍ତି
ଯେସନ୍ତେ ଦୁଇ ଷଣ୍ଢ କ୍ରୋଧେ ଲଢ଼େଇ କରନ୍ତି
ପର୍ବତରେ ପର୍ବତ କି ବାଜୁଅଛି ଅ ନା
ସେ ବେନି ବୀରଙ୍କ ଯୁଦ୍ଧ କି ଉପମା ଦେବା ।
ଘୋର ଗରଜନ କରି ସମର କରନ୍ତି
କମ୍ପଇ ପାତାଳପୁରେ ବାସୁକି ନୃପତି ।
ପାଞ୍ଚଦିନ ପରିଯନ୍ତେ ହୋଇଲା ସମର
କେହି ନ ଘୁଞ୍ଚନ୍ତି ରଣେ ଦୁହେଁ ସମବୀର ।

—※—

## ଦେବଗଣଙ୍କର ସୀତାଙ୍କ ସ୍ତୁତି

ସୀତା ମଙ୍ଗଳାଙ୍କଠାରୁ ପୁଷ୍ପଧନୁ ପ୍ରାପ୍ତହେଇ
ଅସୁରକୁ ଯୌବନ ଦେଖାଇ ପୁଷ୍ପଶର
ମାରିବାରୁ ଅସୁରର ସୀତାଙ୍କ ପ୍ରତି
ପାପ ପ୍ରଲୋଭନ, ତହୁଁ ରାମ
ଓ ଲକ୍ଷ୍ମଣଙ୍କ ଦ୍ୱାରା ସହସ୍ରା
ରାବଣର ମୃତ୍ୟୁ । ।

ଏହାଦେଖି ଦେବଗଣ ତ୍ରସ୍ତ ହୋଇଲେ
ହେଦେବୀ ଜାନକୀ ରଖ ବୋଲିଣ ଡାକିଲେ ।
ଆମ୍ଭଙ୍କୁ ଉଦ୍ଧାର କରି ସ୍ୱର୍ଗ ରକ୍ଷାକର
ଶରଣ ପଶିଲୁ ଦେବୀ ତୁମ୍ଭର ପୟର ।
ଏମନ୍ତେ ବହୁତ ସ୍ତୁତି କଲେ ଦେବଗଣ
ଜାନକୀ ବୋଇଲେ ନଷ୍ଟେ ମାରିବି ରାବଣ ।
ସମୁଦ୍ରରେ ପଶି ଦେବୀ ସାରିଲେକ ସ୍ନାନ
ଅଷ୍ଟ ଅଳଙ୍କାର ମାଏ କଲେ ଆଭରଣ ।
କରଯୋଡ଼ି ମଙ୍ଗଳାକୁ ମାତାକଲେ ସ୍ତୁତି
ଜୟଜୟ ମଙ୍ଗଳାଗୋ ଜୟ ହୈମବତୀ ।
ଜୟ ସର୍ବମଙ୍ଗଳା ଗୋ ଜୟ ମହାମାୟୀ
ଶରଣ ରକ୍ଷଣୀ ତୋହ ବିନା କେହିନାହିଁ ।
ତୁହି ଦେବୀ ମହାମାଈ ମହିଷା ମର୍ଦ୍ଦିନୀ
ଝଙ୍କଡ଼ପୁରବାସିନୀ ଈଶ୍ୱର ଘରଣୀ ।
ଏ ସଂସାର ପାଳି ମା ଆତଙ୍କେ ହେଉ ସାହା
ଭବ ନିବାରିଣୀ ଗୋ ଅପର୍ଣ୍ଣା ମହାମାୟା ।
ତୋତେ ଆଶ୍ରେ କଲି ମୁହିଁ ବିପଦ କାଳରେ
କଷ୍ଟ ପାଇଲେଣି ପ୍ରଭୁ ଅସୁର ଯୁଦ୍ଧରେ ।
ଦଇତ୍ୟକୁ ମାରି ନ ପାରିଲେ ରଘୁରାୟେ
ପ୍ରସନ୍ନ ହୋଇଣ ବର ଦିଅ ମହାମାୟେ ।
ନାହିଁକରି ନାହିଁକରି ଆତଙ୍କେ ଡାକଇ
ମାରିବି ଦୈତ୍ୟକୁ ହସ୍ତେ ଅସ୍ତ୍ର କିଛି ନାହିଁ ।
ଜୟ କାତ୍ୟାୟିନୀ ମାଗୋ ମୋତେ ରକ୍ଷାକର
ମୁହିଁ ଯେ ଶରଣ ପାଦେ ସର୍ବଦା ତୋହର ।

ଏମନ୍ତେ ବହୁତ ସ୍ତୁତି କଲେ ବଇଦେହୀ
ଜୟ ସର୍ବମଙ୍ଗଳାଙ୍କୁ ମନେ ମନେ ଧ୍ୟାୟି ।
ଜ୍ୟୋତିର୍ମୟ ଭୁବନରେ ମହାମାୟୀ ଥିଲେ
ଜାନକୀ ସ୍ମରଣେ ତାଙ୍କ ଆସନ କମ୍ପିଲେ । 15
ମନରେ ଜାଣିଲେ ଦେବୀ ଜାନକୀ ସୁମରେ
ସିଂହବାହିନୀ ଯେ ବିଜେ କଲେ ସିଂହପରେ ।
ଜାନକୀ ଦେବୀଙ୍କି ମାଏ ପ୍ରସନ୍ନ ହୋଇଲେ
ପୁଷ୍ପଧନୁ ପଞ୍ଚଶର ବଢ଼ାଇଣ ଦେଲେ । 16
ପୁଷ୍ପଧନୁ ଶର ପାଇ ଜନକ କୁମାରୀ
ଚରଣ କମଳ ତଳେ ନମସ୍କାର କରି
ଗର୍ଭର ଭିତରେ ତାହା ପୂରାଇଲେ ନେଇ
ଚିତ୍ରସେନ ସନ୍ନିଧାନେ ମିଳିଲେକ ଯାଇ । 18
ରଥ ସଜ କରି ଚିତ୍ରସେନକୁ ବୋଇଲେ
ଘୋରଯୁଦ୍ଧ କରି ପ୍ରଭୁ କଷ୍ଟ ଯେ ପାଇଲେ ।
ଚଳ ଚିତ୍ରସେନ ବେଗେ ତାଙ୍କ ପାଶେ ଯିବା
ଉପାୟ ଭିଆଣ କରି ଅସୁର ମାରିବା । 20
ଏହା କହି ଚିତ୍ରସେନ ରଥ ସଜାଡ଼ିଇ
ରଥପରେ ବଇଦେହୀ ବିଜେକଲେ ଯାଇ ।
ଚିତ୍ରସେନ ଗଗନରେ ରଥ ଘେନିଗଲେ
ସଂଗ୍ରାମ ଭୂମିରେ ଯାଇ ରଥ ରୁହାଇଲେ 22
ଦେଖିଲେକ ଧନୁ ତେଜି ବସିଛନ୍ତି ରାମ
ଅସୁର ସଙ୍ଗରେ ହନୁ କରୁଛି ସଂଗ୍ରାମ ।
ଜାନକୀ ଡାକିଲେ ଶୁଣ ଆହେ ରଘୁସାଇଁ
ଯୁଦ୍ଧ କଲାବେଳେ ଧନୁ ଛାଡ଼ିଲ କମ୍ପାଇ 25
ଶ୍ରୀରାମ ବୋଇଲେ ମୁହିଁ ନ ପାରିଲି ମାରି
ମୋର ଶରମାନ ସବୁ ଦୈତ୍ୟ ଦେଲା ଗିଳି ।
ଜାନକୀ ବୋଇଲେ ହସ୍ତେ ଧନୁଶର ଧରି
ହେଳା ନ କରିଣ ବେଗେ ଅସୁରକୁ ମାରି 26
ଶୁଣିଣ କୋଦଣ୍ଡ ହସ୍ତେ ଧଇଲେ ଶ୍ରୀରାମ
ମନ୍ତ୍ରପଢ଼ି ବିନ୍ଧିଲେକ ପାଞ୍ଚଲକ୍ଷ ବାଣ ।
ଅସୁର ଉପରେ ପଡ଼ି ସବୁ ହେଲା ଚୂର
ବିନ୍ଧିଲେକ ରାମ ପୁଣି ସାତଲକ୍ଷ ଶର । 28
ଚୂର୍ଣ୍ଣହୋଇ ଭାଙ୍ଗିଗଲା ସେ ସମସ୍ତ ବାଣ
ଦଶଲକ୍ଷ ବାଣ ପୁଣି ବିନ୍ଧିଲେ ଲକ୍ଷ୍ମଣ ।
ଅସୁରର ଅଙ୍ଗେ ବାଜି ସବୁ ହେଲା ଚୂର୍ଣ୍ଣ
ଅପସରି ଗଲେ ତହିଁ ସୁମିତ୍ରା ନନ୍ଦନ । 30
ଦେଖିଣ ଜାନକୀ ଦେବୀ ମହାକୋପ କଲେ
ଆରେରେ ଦଇତ୍ୟ ବୋଲି ଉଚ୍ଚେ ଡାକଦେଲେ
ଅପୂର୍ବ ମୂରତି ଧଇଲେକ ବଇଦେହୀ
ଅସୁର ଆଗରେ ସତୀ ଉଭାହେଲେ ଯାଇ । 32
ଦେଖି ଗଗନକୁ ଚାହିଁ ଦେଲାକ ଅସୁର
ମହାକୋପେ ଦୈତ୍ୟ ଅଙ୍ଗ କମ୍ପେ ଥରହର ।
ନବ ଯଉବନ ସତୀ ଦେଲେକ ଦେଖାଇ
ପଞ୍ଚଶର ବେଗେ ପୁଷ୍ପଧନୁରେ ଚଢ଼ାଇ ।
ଆପଣା ଗର୍ଭରୁ କାଢ଼ି ଜନକ ଦୁଲଣୀ
ଅସୁର ଉପରେ ଦେବୀ ବିନ୍ଧିଲେକ ଟାଣି । 35
କନ୍ଦର୍ପର ପଞ୍ଚଶର ଅଙ୍ଗରେ ବାଜିଲା
ବେଳୁବେଳ ଦୈତ୍ୟତନୁ ଆତୁର ହୋଇଲା ।
ଜାନକୀଙ୍କି କହେ ଚାହିଁ ସେ ବିଲଙ୍କା ରାଜା
ବିକଳେ ବୋଲଇ ମୋର ହୁଅ ତୁ ଭାରିଯା ।
ଶ୍ରୀରାମ ସଙ୍ଗତେ ତୁହି କି ସୁଖ ପାଇବୁ
ଏ ବିଲଙ୍କାପୁରେ ମୋର ବିପୁଳ ଭୁଞ୍ଜିବୁ । 38
ଜାନକୀ ବୋଇଲେ ତୁହି ଶ୍ରୀରାମଙ୍କୁ ମାରି
ଶୁଣିଣ ଚଳିଲା ବେଗେ ବିଲଙ୍କା ଈଶ୍ୱର ।
ବଳବୀର୍ଯ୍ୟ ରାଜାର ଯେ ପଡ଼ିଲା ମିଳାଇ
ଅନଳ ଲାଗିଲେ ଯେହ୍ନେ ଘୃତ ତରଳଇ । 40
ଶ୍ରୀରାମଙ୍କ ନିକଟକୁ ଅସୁର ଧାଇଁଲା
ତୋତେ ମାରି ଜାନକୀଙ୍କି ହରିବି ବୋଇଲା ।
ଦେଖି ଧନୁଧର କୋପେ ସେ କୋଦଣ୍ଡଧର
ପାଶୁପତ ବାଣ ବେଗେ କରିଣ ପ୍ରହାର । 42
ଦୁଇଶତ ମୁଣ୍ଡ ତାର କାଟି ପକାଇଲେ
ଲକ୍ଷ୍ମଣ ତା ଭୁଜବଳ ଛେଦି ପକାଇଲେ ।
ଦେଖିଣ ବିକଳ ହେଲା ପ୍ରତାପୀ ଅସୁର
ପୁଣିହିଁ ବାବଲ ବାଣ ବିନ୍ଧେ ରଘୁବୀର ।
ପାଞ୍ଚଶତ ମୁଣ୍ଡ ତାର ପକାଇଲେ ହାଣି
ତିନଶତ ମୁଣ୍ଡ ରାମ କାଟିଲେକ ପୁଣି । 45
ଉବୁରି ଯେତେକ ଭୁଜ ମୁଣ୍ଡ ତାର ଥିଲା
ବାଣେ ସଉମିତ୍ରୀ ତାହା କାଟି ପକାଇଲା ।
ପ୍ରାଣ ଛାଡ଼ି ଅସୁର ଯେ ପଡ଼ିଲା ଭୂମିରେ
ଦେହ ତାର ବିକାଶଇ ମେରୁର ଆକାରେ ।
ଏହାଦେଖି ଦେବଗଣ ହରଷ ହୋଇଲେ
ଶ୍ରୀରାମ ଲକ୍ଷ୍ମଣ ଶିରେ ପୁଷ୍ପ ବୃଷ୍ଟି କଲେ । 48

ଜୟ ଜୟ ଧ୍ୱନ କଲେ ଦେବ ପୁରନ୍ଦର
ଉଶ୍ୱାସ ହୋଇଲା ଆଜ ପୃଥିବୀର ଭର ।
ଅସୁରକୁ ଯୁଦ୍ଧେ ମାର କୋଦଣ୍ଡ ଧାରଣ
ଘନ ଘନ ନିଃଶ୍ୱାସ ଯେ ଛାଡ଼ିଲେ ଶ୍ରୀରାମ ।
ଦେବଙ୍କୁ ବୋଇଲେ ଗୋଟା ଲୁହାମଇ ଆଣ
ଲୁହା ମଇ ବୁଲାଇବ ବଲଙ୍କା ଭୁବନ ।
ଏହାଶୁଣି ଦେବଗଣ ହରଷ ହୋଇଲେ
ଲୁହାମଇ ଗୋଟା ଆଣି ଦେବଗଣ ଦେଲେ
ସୀତା ଘେନି ମଇପରେ ବସିଲେ ଶ୍ରୀରାମ.
ଲୁହାମଇ ବୁଲାଇଲେ ବଲଙ୍କା ଭୁବନ ।
ଖାଲ ଢିପ ଜମିସବୁ ସମତୁଲ କଲେ
ଦୈତ୍ୟ ଗଣ୍ଡିମୁଣ୍ଡ ସମୁଦ୍ରରେ ପକାଇଲେ ।
ଚନ୍ଦ୍ରସେନକୁ ବୋଇଲେ ଯାଅ ସ୍ୱର୍ଗପୁର
ଅଯୋଧ୍ୟାକୁ ବାହାରିଲେ ସେ କୋଦଣ୍ଡଧର ।
ଶ୍ରୀରାମ ଲକ୍ଷ୍ମଣ ପୁଣି ସୀତା ହନୁମାନ
ରଥର ଉପରେ ଯାଇ କଲେ ଆରୋହଣ ।
ଗଗନ ମାର୍ଗରେ ରଥ ଚଳାଇଣ ଗଲେ
ତନନ୍ଦନେ ଅଯୋଧ୍ୟାରେ ପ୍ରବେଶ ହୋଇଲେ ।
ଜାନକୀଙ୍କି ଘେନିଣ ପଶିଲେ ଅଯୋଧ୍ୟାରେ
ଅଭିଷେକ ସାରି ବିଜେ ସିଂହାସନ ପରେ ।

ଈଶ୍ୱର ବୋଲନ୍ତି ଦେବୀ ପାର୍ବତୀ ଗୋ ଶୁଣ
ଅପୂର୍ବ ଚରିତ ଏ ବଲଙ୍କା ରାମାୟଣ ।
ଜୟ ଜୟ ହିଙ୍ଗୁଳା ଗୋ ଜୟ ମାହେଶ୍ୱରୀ
ତୋହର ପ୍ରସାଦେ ସିନ୍ଧୁ ହେଲେ ଗଲି ତରି
ଜୟ ଜୟ ଅପର୍ଣ୍ଣା ଗୋ ତୋ ପାଦେ ଶରଣ
ଶାରଳା ଦାସକୁ ମାତ କର ପରିତ୍ରାଣ ।
ଆହେ ସାଧୁ ସୁଜ୍ଞଜନେ ମୋର ନିବେଦନ
ଦୋଷାଦୋଷ ଥିଲେ କ୍ଷମା କରିବ ଆପଣ ।
ଝଙ୍କଡ଼ବାସିନୀ ମାତ ଅଭୟା କୃପାରେ
ଜନହିତେ ଏ ଗ୍ରନ୍ଥକୁ କଲି ମୁଁ ଭାଷାରେ ।
ହିଂସା କ୍ରୋଧ କପଟତା ମନୁ ଦୂରକର
ଏ ଗ୍ରନ୍ଥ ପଢ଼ିଲେ ତରିଯିବ ଭବବାର ।
ଶ୍ରୀରାମଙ୍କ ନାମ ଯେହୁ ଥରେ ସୁମରିବ
ତାହାର ସକଳ ପାପ ଦହନ ହୋଇବ ।
ରାମ ରାମ ରାମ ନାମ ମୁକତିର ଦ୍ୱାର
ପାନ କରି ସଂସାରରୁ ତର ସାଧୁନର ।
ପାନକର ଦୁଃଖ ସୁଖ ସବୁ ହେବ ଦୂର
ଶ୍ରୀରାମ ନାମାମୃତକୁ ପିଅ ସୁଜ୍ଞନର ।

ଇତି ଶ୍ରୀ ବଲଙ୍କା ରାମାୟଣ ସଦାଜୟେ ସମ୍ପୂର୍ଣ୍ଣ
ଓଁ ଶାନ୍ତି ! ଶାନ୍ତି !! ଶାନ୍ତି !!!



**ବଲଙ୍କା ରାମାୟଣ ପୂର୍ବଖଣ୍ଡ ସମାପ୍ତ**

ମୁଦ୍ରାକର—ଶ୍ରୀ ବିଦ୍ୟାଧର ସାହୁ, ବିଶ୍ୱବିଦ୍ୟା ପ୍ରେସ, ଆଲିଶାବଜାର, କଟକ-୨

କି କି

# ବିଜ୍ଞାପନ

ପ୍ରିୟ ବ୍ୟବସାୟୀ ଓ ଗ୍ରାହକମାନଙ୍କୁ ଅନୁରୋଧ କରୁଅଛୁ କି ଆମ୍ଭର କଟକ ଧର୍ମଗ୍ରନ୍ଥ ଷ୍ଟୋରରେ ହିନ୍ଦୁ ଜଗତର ନାନାବିଧ ଉପାଦେୟ ଗ୍ରନ୍ଥ, ଭୃଗୁସଂହିତା, ପୁରୋହିତ କର୍ମକାଣ୍ଡ, ବିହାଶ କର୍ମକାଣ୍ଡ, ବିହାଶଲଲ ଗୀତା, ଦାଣ୍ଡୀ ବା ଜଗମୋହନ ( ଦକ୍ଷିଣୀ-ରାମାୟଣ ), ପାତଞ୍ଜଳ ଯୋଗଦର୍ଶନ ଆଦି ଧର୍ମଶାସ୍ତ୍ରୀୟ ଗ୍ରନ୍ଥ, ପଞ୍ଜିକା, ଜ୍ୟୋତିଷ, ନାଟକ, ଉପନ୍ୟାସ ଓ ପୁରାଣ ପ୍ରଭୃତି ପୁସ୍ତକ ବିକ୍ରୟ ନିମନ୍ତେ ଗଚ୍ଛିତ ଅଛି । ଗ୍ରାହକ ଓ ବ୍ୟବସାୟୀମାନଙ୍କୁ ଉଚିତ କମିଶନ ଦିଆଯାଏ ।

ଏତଦ୍ ବ୍ୟତୀତ—ସକଳ ଧର୍ମରକ୍ଷା ଓ ଜଗଜ୍ଜନଙ୍କର ସୁଖ ଲାଭାର୍ଥେ ଏକଲକ୍ଷ ଶ୍ଳୋକ ସମ୍ବଳିତ ପଦାର୍ଥ ଓ ସରଳ ଭାବାର୍ଥ ସହିତ—

## ଋକ୍, ଯଜୁଃ, ସାମ ଓ ଅଥର୍ବ

## ଚତୁର୍ବେଦ

## ପ୍ରକାଶ ପାଇଲା

ଏହା ଉତ୍କଳରେ ଓ ଉତ୍କଳାକ୍ଷରରେ ସର୍ବପ୍ରଥମ, ମୂଲ୍ୟବାନ ଅଦ୍ୱିତୀୟ ବିଶାଳ ଗ୍ରନ୍ଥ । ଗ୍ରାମର ପ୍ରତ୍ୟେକ ପାଠାଗାର ଓ ଦେବ-ମନ୍ଦିରାଦିରେ ପାଠକରି ଗୂଢ଼ତତ୍ତ୍ୱ ବୁଝି ସ୍ୱ ସ୍ୱ ଧର୍ମରକ୍ଷା କରନ୍ତୁ ।

---

**ପ୍ରକାଶକ ଓ ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରୋ ପ୍ରାଇଟର—**ଶ୍ରୀ ବିଦ୍ୟାଧର ସାହୁ**

ଅଲିଶାବଜାର, କଟକ-୨

ଫୋନ୍ ନଂ-୨୪୭୯୭